# ପଶୁରାଇଜର କଥା

(ଶିଶୁ ଗଳ୍ପ)

(ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ)

ଆନନ୍ଦ ଚନ୍ଦ୍ର ପତି

ଦ୍ୱିତୀୟ ମୁଦ୍ରଣ : ୧୯୮୮

**ପଶୁରାଇଜର କଥା**

ଲେଖକ : **ଆନନ୍ଦ ଚଂଦ୍ର ପଣ୍ଡା**

ପ୍ରକାଶିକା : **ଅରୁନ୍ଧତୀ ପଣ୍ଡା**
ଘର ନଂ- ୧୭୯, ଟାଇପ୍ ଇ
ଇଉନିଟ୍-୮, ଭୁବନେଶ୍ୱର

ମଲାଟ ଚିତ୍ର **ବଳଦେବ ମହାରଥା**
ବହି ଭିତର ଚିତ୍ର **ଉଦୟ ଜେନା**
ମୁଦ୍ରଣ : **ଶ୍ରୀ ଜଗନ୍ନାଥ ପ୍ରେସ**
ପ୍ଲଟ୍ ନଂ-ଏନ୍ ୪/୧୭
ନୟାପଲ୍ଲୀ, ଭୁବନେଶ୍ୱର-୧୨

**ମୂଲ୍ୟ—ଚାରିଟଙ୍କା ପଞ୍ଚାଅଶୀ ପଇସା**

# ନିଜ କଥା

ମଣିଷ ଆଜି ଅନ୍ୟାନ୍ୟ ଗ୍ରହରେ ଜୀବଜନ୍ତୁର ସନ୍ଧାନ କରୁଛି । କିନ୍ତୁ ଏହି ପୃଥିବୀରେ ଦିନେ ମଣିଷର ପଡ଼ୋଶୀଥିବା ପଶୁମାନେ ସେଇପରି ଅବସ୍ଥାରେ ପଡ଼ିଛନ୍ତି । ସେମାନଙ୍କ କଥା ମଣିଷ ଚିନ୍ତା କରୁନାହିଁ । ବରଂ ସେମାନଙ୍କୁ ନିଜ କାମରେ ବିଭିନ୍ନ ଭାବେ ଖଟେଇ କଷ୍ଟ ଦେଉଛି । ସେମାନଙ୍କ ଦେହପା, ସୁବିଧା, ଅସୁବିଧା ପ୍ରତି ଦୃଷ୍ଟି ନ ଦେଇ କାମ କରାଉଛି; କାମକୁ ନ ପାରିଲେ ନିଷ୍ଠୁର ଭାବେ ଦଣ୍ଡ ଦେଉଛି । କେତେକ ପଶୁଙ୍କୁ ଅତି ନିର୍ଦ୍ଦୟ ଭାବରେ ମାରି ସେମାନଙ୍କର ମାଂସ ଖାଉଛି । ବଣ, ଜଙ୍ଗଲ କାଟି, ପୋଡ଼ି ପଶୁମାନଙ୍କ ରହିବାରେ ଅସୁବିଧା ସୃଷ୍ଟି କରୁଛି ।

ମୁଁ ଗପ ଗୁଡ଼ିକରେ ପଶୁମାନଙ୍କ ମୁହଁରେ ଭାଷା ଦେଇ ସେମାନଙ୍କ ଅଭାବ, ଅସୁବିଧା ଓ ସେମାନଙ୍କ ପ୍ରତି ମଣିଷର ଦୁର୍ବ୍ୟବହାର ବିରୁଦ୍ଧରେ ଅସନ୍ତୋଷ ପ୍ରକାଶ କରେଇଛି ।

ପଶୁମାନଙ୍କର ବିଭିନ୍ନ ସମସ୍ୟା ସହିତ ଶିଶୁମାନଙ୍କୁ ପରିଚିତ କରାଇ ସେମାନଙ୍କ ପ୍ରତି ଶିଶୁମନରେ ଦରଦ ଓ ସହାନୁଭୂତି ବଢ଼ାଇବା ପାଇଁ ଉଦ୍ୟମ କରିଛି । ଆଶାକରେ ପିଲାମାନେ "ପଶୁ ରାଇଜର କଥା" ପଢ଼ି ଉପଭୋଗ କରିବେ ।

ଏ ବହିଟି ଆଲୋକକୁ ଆଣିବା ଦିଗରେ ମୋତେ ବିଭିନ୍ନ ଭାବରେ ସାହାଯ୍ୟ କରିଛନ୍ତି ସାହିତ୍ୟିକ, ସାମ୍ବାଦିକ, ଅଡ଼୍‌ଭୋକେଟ୍ ରମେଶ ଚନ୍ଦ୍ର ଧଳ, ଅଧ୍ୟାପିକା ଶାନ୍ତି ଧଳ, ଡକ୍ଟର ପୂର୍ଣ୍ଣିମା ଧଳ, ଓ ଶ୍ରୀମାନ୍ ମନୋଜ କୁମାର ଜେନା । ଏ ସମସ୍ତଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ଆନଂଦ ଚଂଦ୍ର ପଣ୍ଡା

ନିହାଲ ପ୍ରସାଦ
ଢେଙ୍କାନାଳ

# ସୂଚୀ

# ବାଘ କିପରି ରାଜା ହେଲା

ବୁଢ଼ା ରାଜା ସିଂହ ମରିଗଲା ପରେ ବଣର ପଶୁମାନଙ୍କ ମଧ୍ୟରେ ଗୋଳମାଳ ପଡ଼ିଗଲା । ଏଡେ ବଡ଼ ବଣ ରାଜ୍ୟରେ ରାଜା ହେବ କିଏ ? ଜଣେ ରାଜା ହୋଇ ହୁକୁମ୍ ଦେଲେ ବୁଢ଼ାରାଜାର ଶବ ଉଠବ । ବୁଢ଼ା ରାଜାର ପୁଅ କି ଝିଅ କେହି ନାହାନ୍ତି । ରାଜା ହେବ କିଏ ? ରାଜ୍ୟ ଚାଲିବ କେମିତି ?

ବାଘ ବଣଯାକ ବୁଲିବୁଲି କହୁହେଉଛି— ସିଂହ ମରିଗଲା । ଆଉ ତା'ବଂଶରେ କେହି ନାହାନ୍ତି କି ଆଉ ଗୋଟେହେଲେ ସିଂହ ଏ ବଣରେ ନାହିଁ ବର୍ତ୍ତମାନ ଏ ବଣରେ ସବୁଠାରୁ ମୁଁ ବଳିଆ । ମୁଁ ସମସ୍ତଙ୍କଠୁ ବୁଦ୍ଧିଆ । ମୋ ଛଡ଼ା ଏ ରାଜ୍ୟରେ କିଏ ରାଜା ହେବ ?

ହାତୀ ବି ଯାହାକୁ ଦେଖୁଛି କହୁଛି— ମୁଁ ବଣର ପଶୁମାନଙ୍କ ଭିତରେ ସବୁଠୁ ବଳୁଆ । ମୋ ପରି ବଡ଼ ପଶୁ ଏ ବଣ ରାଜ୍ୟରେ ନାହିଁ । ମୁଁ ରାଜା ନହୋଇ ଆଉ କିଏ ରାଜା ହେବ ?

ଭାଲୁ କହି ବୁଲୁଛି— ଏ ବାଘ, ହାତୀ ବଳିଆ, ବଡ଼ ବଡ଼ ପଶୁ କିନ୍ତୁ ଏମାନଙ୍କର ବୁଦ୍ଧି କେତେ ? ରାଜ୍ୟ ଶାସନ କରିବା ପରି ବୁଦ୍ଧି ବିଦ୍ୟା ଏମାନଙ୍କର କାହିଁ ? ବୁଦ୍ଧି ବଳରେ ମୁଁ ଏମାନଙ୍କ କାନ କାଟି ଦେବି । ତେଣୁ ମୋ ଠାରୁ ଅଧିକ ଯୋଗ୍ୟ ଏ ବଣରେ ଆଉ କିଏ ଅଛି ?

ମାଂସ ଖାଉଥିବା ପ୍ରତ୍ୟେକ ପଶୁ ମନେ ମନେ ଭାବୁଥାଏ, ତା'ଠାରୁ ବଳୁଆ, ବୁଦ୍ଧିଆ ଆଉ କେହି ନାହିଁ । ତେଣୁ ସେ ହିଁ ରାଜା ହେବ ।

କିନ୍ତୁ ଘାସ ଖାଉଥିବା ପଶୁମାନେ ଏକାଠି ହୋଇ ବିଚାର କଲେ– ନା, ଆମେ ଆଉ ଏ ମାଂସଖିଆ ପଶୁମାନଙ୍କ ଭିତରୁ କାହାକୁ ରାଜା କରେଇ ଦବାନାହିଁ । ଏମାନେ ରାଜା ହୋଇ ତାଙ୍କ ସୁଖ, ସୁବିଧା ଦେଖୁଛନ୍ତି । ଆମକୁ ମାରି ଖାଉଛନ୍ତି । ଏମାନଙ୍କୁ ଡରି ଡରି ଆମେ ବଳୁଛେ । ତେଣୁ ଆମ ଭିତରୁ ଯଦି ଜଣେ କିଏ ରାଜା ହୁଅନ୍ତା ତେବେ ଆମର ଉପକାର ହୁଅନ୍ତା ।

ମାଙ୍କଡ଼ ମନେ ମନେ ଭାବୁଥାଏ ମୁଁ ଏ ବଣରେ ସବୁଠୁ ବୁଦ୍ଧିଆ । ମୁଁ ମଣିଷର ପୂର୍ବପୁରୁଷ । ମଣିଷପରି ମୋର ହାତ, ଗୋଡ଼, ଦେହ ଅଛି । ମୁଁ ବଣରେ ରହେ ଗାଁରେ ବି ରହିପାରେ । ମୁଁ ମୂର୍ଖ ପଶୁମାନଙ୍କ ପରି କଞ୍ଚା ମାଂସ କି ଘାସ ଖାଏ ନାହିଁ । ମୁଁ ମଣିଷମାନଙ୍କ ପରି ଆମ୍ବ, କଦଳୀ, ପିଜୁଳି ଆଦି ଫଳ ଖାଏ । ତେଣୁ ମୁଁ ଏ ବଣରେ ରାଜା ହେବାର ଯୋଗ୍ୟ ।

ସାରା ବଣରେ ହଇଚଇ । ଇଏ କହୁଛି ମୁଁ ରାଜା ହେବ, ସିଏ କହୁଚି ମୁ ରାଜା ହେବ । କାହା କଥା କାହା ମନକୁ ପାଉନାହିଁ । ଏଣେ ସିଂହର ଶବଟା ପଡ଼ି, ପଚି ଗନ୍ଧ ହେଲା ।

ବଣଯାକର ସବୁ ପଶୁ ଏକାଠି ହେଲେ । ସେଠାରେ ସବୁ କଥା ଆଲୋଚନା ହେଲା । କ'ଣ ଗୋଟାଏ ନିଷ୍ପତ୍ତି ନହେଲେ ଏ ବଣ ରାଜ୍ୟରେ ସବୁ ଓଲଟ ପାଲଟ ହୋଇଯିବ । ସମସ୍ତେ ଗୋଟିଏ ପଡ଼ିଆରେ ରୁଣ୍ଡ ହୋଇଛନ୍ତି । ହଠାତ୍ ବାଘ ଆଉ ହାତୀର କଳି କଜିଆ ଆରମ୍ଭ ହୋଇଗଲା । ହାତୀ କହୁଛି ମୁଁ ରାଜା ହେବ, ବାଘ କହୁଛି ମୁଁ ରାଜା ହେବା ଉଚିତ । ପାଟି ତୁଣ୍ଡ ହେଉ

ହେଉ ଦୁହିଁଙ୍କ ଭିତରେ ଲଢ଼େଇ ଆରମ୍ଭ ହୋଇଗଲା । ଗର୍ଜନ, ତର୍ଜନରେ ବଣ କମ୍ପି ଉଠିଲା । ପଶୁମାନେ ଏ ଦୁଇଜଣଙ୍କୁ ଅଲଗା କରି ଦେଲେ ।



ବିଲୁଆ କହିଲା—ଭାଇମାନେ ! ରାଜା ହେବାପାଇଁ ଆମ ଭିତରେ କଳିଗଳିଆ କରିବା ଉଚିତ ନୁହଁ । ବଳଦେଖାଇ କେହି ରାଜା ହେବାକୁ ଇଚ୍ଛା କଲେ ପାରିବ ନାହିଁ । ଆମେ ସମସ୍ତେ ଏକାଠି ହୋଇ ତାର ବିରୋଧ କରିବୁ । ବର୍ତ୍ତମାନ କିଏ ରାଜା ହେବ ସେଇଟା ବଡ କଥା ନୁହଁ । ବଡ଼ କଥା ହେଉଛି ବୁଢା ରାଜାଙ୍କ ଶବ କେମିତି ଉଠିବ । ମୋ ମତରେ ରାଜା ମରିଗଲା ପରେ ଆମର କେହି ରାଜା ନାହାନ୍ତି । ଆମେ ସମସ୍ତେ ସମୁହଭାବରେ ଏ ବଣର ରାଜା । ତେବେ ଆମେ ସମସ୍ତେ ଚାଲନ୍ତୁ ରାଜାଙ୍କ ଶବ ଉଠାବାର ଆଦେଶ ଦେବା । ଶବଟିକୁ ପ୍ରଥମେ ସମାଧି ଦେବା ତାପରେ ଯାଇ କାହାକୁ ରାଜା କରିବା ସେ କଥା ଚିନ୍ତା କରିବା ।

ବିଲୁଆର ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା । ସେଇ ପଡ଼ିଆରେ ଗୋଟିଏ ଗାଡ଼ ଖୋଳି ବୁଢ଼ା ରାଜାର ଶବକୁ ସମାଧି ଦେଲେ ।

ବାଘ କହିଲା—ଏବେତ ବୁଢ଼ା ରାଜାର ଶବକୁ ସମାଧି ଦିଆ ସରିଲା, ଚାଲ ଏଥର ଏଇ ସଭାରେ ଭୋଟ ଦେଇ ଆମର ରାଜା ବାଛିବା ।

ସବୁ ପଶୁ ମାନଙ୍କ ମଧ୍ୟରେ ଚୁପ୍ ଚାପ୍, ଫୁସ୍ ଫାସ ଆରମ୍ଭ ହୋଇଗଲା ।

ମାଙ୍କଡ଼ କହିଲା—ଭୋଟ ସେମିତି ହୁଏ ନାହିଁ । ପ୍ରଥମେ ଦେଖ କିଏ କିଏ ରାଜା ହେବାପାଇଁ ଇଚ୍ଛା କରୁଛନ୍ତି । ସେମାନଙ୍କ ନାଆଁ ଏଇ ସଭାରେ ଜଣାଇ ଦିଆଯାଉ । ଯେଉଁମାନେ ରାଜା ହେବାକୁ ଇଚ୍ଛା କରୁଛନ୍ତି ସେମାନେ ରାଜା ହେଲେ ଏ ବଣର କ'ଣ ଉନ୍ନତି କରିବେ, ବଣର ପଶୁମାନଙ୍କର କ'ଣ ଉନ୍ନତି କରିବେ, କୁହନ୍ତୁ । ଆମକୁ ଚାରି, ଅଠଦିନ ସମୟ ଦିଆଯାଉ, ଆମେ ବିଚାର କରି ଦେଖିବୁ କିଏ ପ୍ରକୃତରେ ଆମର ଉନ୍ନତି କରିପାରିବ, ଆମ ଦୁଃଖ ବୁଝିବ । ତା'ପରେ ଯାଇ ଆମେ ଭୋଟ ଦେବୁ ।

କଥାଟା ସମସ୍ତଙ୍କ ମନକୁ ପାଇଲା । ବିଲୁଆ କହିଲା—ଭାଇମାନେ ! ଆପଣଙ୍କ ଭିତରୁ ଯାହାର ରାଜା ହେବାକୁ ଇଚ୍ଛା ଅଛି ସେମାନେ ଠିଆ ହୁଅନ୍ତୁ ।

ପ୍ରଥମେ ବାଘ, ତା'ପରେ ହାତୀ, ତା'ପରେ ଭାଲୁ ଓ ସବା ଶେଷରେ ଆଗକୁ ପଛକୁ ଚାହିଁ ମାଙ୍କଡ଼ ଠିଆ ହେଲା । ଠେକୁଆ ଆସି ହରିଣ କାନରେ କ'ଣ କହିଲା କିନ୍ତୁ ହରିଣ ମୁଣ୍ଡ ହଲାଇ ନାଇଁ କଲା । ଆଉ କେହି ଠିଆ ହେଲେ ନାହିଁ ।

ବିଲୁଆ କହିଲା—ଆମର ରାଜା ହେବାପାଇଁ ବାଘ, ଭାଲୁ, ହାତୀ ଓ ମାଙ୍କଡ଼ ଇଚ୍ଛା କରୁଛନ୍ତି । ମୋ ମତରେ ଆଜଠୁ ଅଠଦିନ ପରେ ଠିକ୍ ଆଜିରବାର ଦିନ ଭୋଟ ହେବ । ଆପଣମାନେ ଯଦି ମୋ କଥାକୁ ସମର୍ଥନ କରୁଥାଆନ୍ତି ତେବେ ତାଳି ଦେଇ ସମର୍ଥନ ଜଣାନ୍ତୁ ।

ସବୁ ପଶୁ ତାଳି ମାରି ସମର୍ଥନ ଜଣାଇଲେ । ହରିଣ ଠିଆହୋଇ କହିଲା—ଶ୍ରେଷ୍ଠ ପରିଚାଳନା ଦାୟିତ୍ୱରେ ଭାଲୁଆ ରହନ୍ତୁ । ମୁଁ ସଭାରେ ଏ ପ୍ରସ୍ତାବ ଦେଉଛି ।

ଠେକୁଆ ଏ ପ୍ରସ୍ତାବକୁ ସମର୍ଥନ ଜଣାଇଲା । ସମସ୍ତେ କରତାଳି ଦେଇ ସମର୍ଥନ ଜଣାଇଲେ । ସେଦିନ ସେତିକିରେ ସଭା ଭାଙ୍ଗିଗଲା ।

ସାରା ବଣଟା ଶ୍ରେଷ୍ଠ ପ୍ରଚାରରେ ଖାଲି ଉଠିଲା ପଡ଼ିଲା । ବାଘ ତାର ସମର୍ଥକ ଦଳେ ପଶୁଙ୍କୁ ଧରି ତାର ପ୍ରଚାର ଆରମ୍ଭ କରିଦେଲା । ବଣ ମଝିରେ ତାର ନିର୍ବାଚନ ଅଫିସ । ସେ ଅଫିସରେ ଦିନ ରାତି ଭିଡ଼ । ସେଠି ଖାଲି ଖିଆପିଆର ସୁଅ ଛୁଟିଛି । ଠାଆକୁ ଠାଆ ସଭାମାନ କରି ବାଘ ଭାଷଣ ଦେଲା--ଦେଖ ଭାଇମାନେ ! ଏ ହାତୀଟା ହୁଣ୍ଡାରାମା । ତା ମୁଣ୍ଡରେ ବୁଦ୍ଧି ବୋଲି ବୁନ୍ଦାଏ ନାହିଁ । ଏତେ ବଡ଼ ଦେହକୁ ବି ସେ ଆଖି ସାହାଯ୍ୟରେ ଦେଖିପାରେ ନାହିଁ । ସିଏ ରାଜା ହେଲେ ଏତେ ବଡ଼ ବଣର ଶାସନ କେମିତି ଦେଖିବ ? ସେଇଟା ତ ଗଜ ମୂର୍ଖଟାଏ, ରାଜ୍ୟ ଚଲାଇବ କେମିତି ? ଆଉ ଭାଲୁ, ସିଏ ପୁଣି କହୁଚି କ'ଣନା ରାଜା ହେବ । ରାଜାହେବାଟା କ'ଣ ଏତେ ଶସ୍ତା କଥା ? ତା ଦେହସାରା ବାଳ । ଏମିତିକି ତା'ଆଖି ଦୁଇଟା ବି ବାଳରେ ଘୋଡ଼ାଇ ହୋଇଚି । ସେ ଏତେ ବଡ଼ ବଣର ଶାସନ ଦେଖିବ କେମିତି ? ଖରା ଗରମରେ ସିଏ ଜରରେ କମ୍ପୁଥାଏ । ସିଏ କି ରାଜ୍ୟ ଚଲାଇବ ? ରାଜା ହେଲାପରେ ତାର ବା ଚେହେରା କାହିଁ ? ଗୋଠ ମାଡିଲେ ଖଣ୍ଡିଆ ମାଡିଲା ପରି ମାଙ୍କଡ କହିଚି ସିଏ ରାଜା ହେବ । ମାଙ୍କଡ଼ର ମାଙ୍କଡ଼ିଆ ପ୍ରକୃତି ସମସ୍ତେ ଜାଣନ୍ତି । ସିଏ କିଛି କରି ପାରିବ ନାହିଁ । ସବୁ ଜିନିଷ ଭାଙ୍ଗିବ । ସିଏ ବଣଟାକୁ ଦାଦରା

ରହିଲେ, ଗାଁ ଆଡ଼େ ଚରିବାକୁ ଯାଏ । ମଣିଷ ମାନଙ୍କ ବାଡ଼ି ବଗିଚାରୁ ଫଳ ଚୋରିକରି ଖାଏ । ଏମିତି ଗୋଟାଏ ଚୋର ରାଜା ହେଲେ ତାକୁ କିଏ ମାନିବ ?



ମୁଁ ସିଂହ ପରି ବଳୁଆ ଓ ବୁଦ୍ଧିଆ । ମୁଁ ରାଜା ହେଲେ ବଣର ଶାସନ ଠିକ ଚାଲିବ । ବଣକୁ ଗୋଟିଏ ହେଲେ ମଣିଷ ମୁଁ ଛାଡ଼ି ଦେବ ନାହିଁ । କେହି ଜଣକୁ ଗୋଟିଏ ହେଲେ ଗଛ କାଟି ପାରିବେ ନାହିଁ । ବଣର ଚାରି ଦିଗରେ ଚାରିଟି ପୋଖରୀ ଖୋଳାଇବି, ଆଉ ପାଣି କଷ୍ଟ ରହିବ ନାହିଁ । ବଣରେ ପ୍ରଚୁର ଘାସ ଆଉ ଫଳ ମୂଳ ରହିବ । କେହି ଯେପରି ଭୋକ ଉପା-ସରେ କି ଶୋଷରେ ମରି ନଯାଏ, ସେ କଥା ମୁଁ ଦେଖିବି । ସମସ୍ତଙ୍କୁ ନ୍ୟାୟ ବିଚାର ଦେବି । ମୋ ବିନା ଆଉ ଯିଏ ରାଜା ହେବ ତାକୁ କେହି ମାନିବେ

ନାହିଁ । ବଣରେ ଅରାଜକତା ଦେଖାଦେବ । ତେଣୁ ମୋତେ ବହୁ ସଂଖ୍ୟାରେ ଭୋଟ ଦେଇ ଜୟଯୁକ୍ତ କରନ୍ତୁ ।

ହାତୀ ପଛରେ ବି ଦଳେ ପଶୁ । ହାତୀର ନିର୍ବାଚନ ଅଫିସ ଠିକ ବାଘ ଅଫିସର ମୁହାଁମୁହିଁ । ହାତୀ ତାର ସମର୍ଥକମାନଙ୍କୁ ଧରି ପ୍ରଚାର ଚଳାଇଲା । ସଭା କରି କହିଲା—ଭାଇ ଓ ଭଉଣୀମାନେ ! ମୁଁ ବାଘଠାରୁ ଢ଼େର ବଳୁଆ । ମୁଁ ଯେ ବଳଆ ସେ କଥା ମୁଁ ନିଜେ ଖାଲି କହିଦେଲେ ହେବ ନାହିଁ ଆପଣ ଜାଣିଛନ୍ତି ଭଗବାନ ମୋତେ ବଡ଼ କରି ଗଢ଼ିଛନ୍ତି । ତେଣୁ ମୁଁ ବଣର ରାଜା ହେଲେ ଭଗବାନଙ୍କ ଇଚ୍ଛା ପୂର୍ଣ୍ଣ ହେବ । ସବୁ ପଶୁମାନଙ୍କର ମଙ୍ଗଳ ହେବ । ମୁଁ ମାଂସ ନ ଖାଇ ଡାଳ, ପତ୍ର ଖାଏ । ତେଣୁ ମୋତେ କୌଣସି ପଶୁ ଭୟ କରେନାହିଁ । ମୁଁ ରାଜା ହେଲେ ପଶୁମାନେ ପଶୁ ମାଂସ ଖାଇବା ନିଷେଧ କରିବି । ବଣୁଆ ପଶୁ ଓ ଗାଉଁଲି ପଶୁ ଭିତରେ ବନ୍ଧୁତ୍ୱ ବଢ଼ାଇବି । ମୋ ରାଜ୍ୟରେ କେହି କାହାକୁ ଭୟ କରିବେ ନାହିଁ । ଖାଇବା ପିଇବା ପାଇଁ କାହାର ଯେପରି ଅସୁବିଧା ନହେବ, ସେକଥା ମୁଁ ଦେଖିବି । ସବୁ କଥାରେ ଆପଣମାନଙ୍କ ପରାମର୍ଶ ନେଇ ଯାହା ଉଚିତ ହେବ କରିବି । ମୋତେ ବହୁ ସଂଖ୍ୟାରେ ଭୋଟ ଦେଇ ଜୟଯୁକ୍ତ କରନ୍ତୁ ।

ଭାଲୁର ନିର୍ବାଚନ ଅଫିସ ବଣର ଗୋଟାଏ କଣକୁ । ତା ପଛରେ ବି କେତେକ ସମର୍ଥକ ଅଛନ୍ତି । ସଭା ନ କରି ଘର ଘର ବୁଲି ପ୍ରଚାର ଚଳାଇଥାଏ ଯାହାକୁ ଦେଖେ ତା'ଓଠରେ, ଲାଞ୍ଜରେ ହାତ ମାରି ଅନୁରୋଧ କରି କହେ—ଭାଇ ମୋତେ ଭୋଟ ଦେବ । ଭୁଲିଯିବ ନାହିଁ । ମୁଁ ବାଘ କି ହାତୀପରି ଗର୍ବୀ ନୁହଁ । ମୁଁ ତୁମରି ଭିତରୁ ଜଣେ । ମୁଁ ରାଜା ହେଲେ ନିଜକୁ ରାଜା ବୋଲି

ନଭାବ ତୁମର ସେବକ ବୋଲି ଭାବିବ । ମୋ ରାଜ୍ୟରେ କେହି ସାନ ବଡ଼ ରହିବେ ନାହିଁ । ମୋ ଆଖିରେ ସମସ୍ତେ ସମାନ । ସମସ୍ତେ ମୋଠାରୁ ସମାନ ବ୍ୟବହାର ଓ ସମାନ ନ୍ୟାୟ ପାଇବେ । ନିରୀହ ପଶୁମାନଙ୍କୁ ଶତ୍ରୁ ହାତରୁ ରକ୍ଷା କରିବାର ବ୍ୟବସ୍ଥା କରିବି । ମୋତେ ଭୋଟ ଦେଇ ଜୟଯୁକ୍ତ କରାଅ ।

ମାଙ୍କଡ଼ର ନିର୍ବାଚନ ଅଫିସ ଗଛ ଡାଳରେ । ମାଙ୍କଡ଼ ଏକା ଏକା ବୁଲି ତାର ଭୋଟ ପ୍ରଚାର କରୁଥାଏ । ସେ କହୁଥାଏ ଭାଇମାନେ : ବାଘ ଆଉ ଭାଲୁ ମାଂସ ଖାଆନ୍ତି । ସେମାନଙ୍କ ବିଶ୍ୱାସ ନାହିଁ । ସେମାନଙ୍କ ଭିତରୁ ଯଦି କିଏ ରାଜା ହୁଏ ତାଙ୍କୁ ଡ଼ରି ଡ଼ରି ଚଳିବାକୁ ହେବ । ସେମାନେ ସାମାନ୍ୟ କଥାରେ ରାଗି ଉଠନ୍ତି । ରାଗିଗଲେ ସେମାନଙ୍କର ଜ୍ଞାନଜ୍ଞାନ ରହେନାହିଁ । ଆଉ ହାତୀ, ତା କଥା କୁହନା । ଏତେ ବଡ଼ ଜନ୍ତୁର ଏତେ ଟିକେ ଟିକେ ଆଖି । ତାର ଆଖି ଯେମିତି ଛୋଟ ବୁଦ୍ଧି ବି ସେମିତି ଛୋଟ । ଆଉ ବେଳେବେଳେ ତାର ମୋଟ ଦେହପରି ତାର ବୁଦ୍ଧି ମଧ୍ୟ ମୋଟା ହୋଇଥାଏ । ବାଘ, ଭାଲୁ କିମ୍ବା ହାତୀ ଏ ବଣରେ ରାଜା ହେଲେ ଆମ ସମସ୍ତଙ୍କର ଦୁଃଖ ବଢ଼ିଯିବ । ମୋତେ ଯଦି ଆପଣମାନେ ଭୋଟ ଦେଇ ଜୟଯୁକ୍ତ କରନ୍ତି ତେବେ ମୁଁ ଏ ବଣର ଚେହେରା ବଦଳାଇ ଦେବି । ଆପଣମାନେ ଜାଣନ୍ତି ମୁଁ ମଣିଷର ବଂଶଧର । ମୁଁ ମଣିଷ ସମାଜ ପରି ଆମର ଏ ପଶୁ ସମାଜକୁ ଗଢ଼ିବି । ଏଇ ଛୋଟିଆ ବଣ ଭିତରେ ଅଳ୍ପ ପରିଶ୍ରମରେ କେମିତି ପ୍ରଚୁର ଖାଦ୍ୟ ମିଳିବ ତାର ବ୍ୟବସ୍ଥା କରିବି । ରୋଗରେ ପଡ଼ିଲେ ଚିକିତ୍ସା କରିବା ପାଇଁ ଔଷଧର ବ୍ୟବସ୍ଥା କରିବି । ଆମ ପିଲାଏ କେମିତି ମଣିଷ ପିଲା ପରି ପାଠ ପଢ଼ିବେ, ଆମ ସମସ୍ତଙ୍କର କେମିତି ଗୋଟିଏ ଭାଷା ହେବ, ଆମ ପଢ଼ିବା ପାଇଁ କେମିତି ବହି ତିଆରି ହେବ ସେ ବ୍ୟବସ୍ଥା କରିବି । ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ

ଯିବାପାଇଁ ଗାଡ଼ିର ବ୍ୟବସ୍ଥା କରିବି । ମୋଟ ଉପରେ ମୁଁ ମଣିଷ ସମାଜ ପରି ଏ ପଶୁ ସମାଜକୁ ସଭ୍ୟ, ଶିକ୍ଷିତ କରି ଗଢ଼ିବାକୁ ଚେଷ୍ଟା କରିବି । ମୋତେ ଆପଣମାନେ ଭୋଟ ଦେଇ ଜୟଯୁକ୍ତ କରାନ୍ତୁ ।

ଏଇପରି ସିଏ ଯାହାର ଭୋଟ ପ୍ରଚାର ଖୁବ୍ ଜୋର ସୋରରେ ଚଲାଇଲେ । ଭୋଟ ଦିନେ ଥିଲା ବିଲୁଆ କହିବା ଅନୁସାରେ ଭୋଟ ପ୍ରଚାର ବନ୍ଦ କରି ଦିଆଗଲା । ବାଘ, ଭାଲୁ, ହାତୀ ଓ ମାଙ୍କଡ଼ ପ୍ରତ୍ୟେକେ ଭାବୁଥାନ୍ତି ସେ ନିଶ୍ଚୟ ଜୟଯୁକ୍ତ ହେବେ ।



ଭୋଟ ଦିନ ବିଲୁଆ, ନେଉଳ ଆଉ ଠେକୁଆ ସକାଳୁ ଆସି ଭୋଟ କେନ୍ଦ୍ରରେ ପହଞ୍ଚିଲେ । ସେମାନଙ୍କ ଦାୟିତ୍ୱରେ ଭୋଟ ଦିଆ କାମ ସୁରୁ-ଖୁରୁରେ ଆରମ୍ଭ ହେଲା । ଧାଡ଼ିବାନ୍ଧି ପଶୁମାନେ ଭୋଟ ଦେବାକୁ ଠିଆହେଲେ । ଜଣକ ପରେ ଜଣେ ଜଣେ ଆସି ଭୋଟ ଦେଇ ଚାଲିଗଲେ । ସଂଜବେଳକୁ ଭୋଟ ସରିଗଲା । ତାପରେ ଭୋଟ ଗଣତି ଆରମ୍ଭ ହେଲା । ବାଘ, ହାତୀ, ଭାଲୁ ଆଉ ମାଙ୍କଡ ଗଣତି ପାଖରେ ଜଗି ବସିଲେ । ଭୋଟ ଗଣତିର ଅଧଘଣ୍ଟାକ

ଭିତରେ ହାତୀ ଆଗେଇଲା । ହାତୀର ସମର୍ଥକମାନେ ତାଳିମାରି ଡେଇଁଲେ କିନ୍ତୁ ତା'ପର ଅଧଘଣ୍ଟାରେ ବାଘ ଆଗେଇଲା । ସମସ୍ତଙ୍କୁ ପଛରେ ପକେଇ ବହୁତ ଅଧିକ ଭୋଟରେ ବାଘ ଜୟଯୁକ୍ତ ହେଲା ।

ସମସ୍ତେ ବାଘର ଜୟଗାନ କଲେ । ବାଘ ସଙ୍ଗେ ସଙ୍ଗେ ଠିଆ ହୋଇ କହିଲା ଭାଇମାନେ, ଆପଣମାନେ ମୋତେ ଭୋଟ ଦେଇ ଜୟଯୁକ୍ତ କରାଇଥିବାରୁ ମୁଁ ଆପଣମାନଙ୍କୁ ସମସ୍ତଙ୍କ ଧନ୍ୟବାଦ ଦେଉଛି । ଭୋଟ ପ୍ରଚାର ବେଳେ ମୁଁ ଆପଣମାନଙ୍କୁ ଯାହା କହିଥିଲି ତାହା ନିଶ୍ଚୟ ପୂରଣ କରିବି ।

ବାଘ ସେହିଦିନଠୁ ବଣରେ ରାଜା ହୋଇଛି । ସିଂହ ଯେପରି ପ୍ରଜା ପାଳୁଥିଲା ବାଘ ସେପରି ପ୍ରଜା ପାଳି ସୁନାମ ଅର୍ଜନ କଲା ।

ବାଘ ତାର ସାହାସ, ବୁଦ୍ଧି, ବଳ ଓ ସୁନ୍ଦର ଚେହେରା ଯୋଗୁ ଆମ ଦେଶର ଜାତୀୟ ପଶୁ ହୋଇ ପାରିଛି ।



# ପଶୁଙ୍କ ମହାସଭା

ଠେକୁଆ ଡାକି ଡାକି କହିଗଲା—ଭାଇମାନେ ! ବଣୁଆଁ ପଶୁ ଆଉ ଗାଉଁଲି ପଶୁ ସମସ୍ତଙ୍କର ଆସନ୍ତା କାଲି ଗୋଟିଏ ମହାସଭା ହେବ । ଏ ସଭାରେ ସବୁ ପଶୁ ଯୋଗଦେବା ପାଇଁ ବାଘ ମହାରାଜାଙ୍କର ଆଦେଶ ।

ଏ ନୂଆ କଥା ଶୁଣି ବଣରେ ଥିବା ପଶୁ ଓ ଗାଁରେ ଥିବା ପଶୁମାନଙ୍କ ମଧ୍ୟରେ ଫୁସ୍ ଫାସ୍ ଆରମ୍ଭ ହୋଇଗଲା । ବାଘମହାରାଜ ବଡ଼ ଖିଆଲି । ତାଙ୍କ ମୁଣ୍ଡକୁ ଯାହା ଢୁକିଥିବ ସେଇଆ । ତଥାପି ବାଘର ଆଦେଶ ତାକୁ କିଏବା ଏଡ଼ାଇ ରହିବାକୁ ସାହସ କରିବ ?



ବଣ ମଝିରେ ଗୋଟିଏ ବଡ଼ ପଡ଼ିଆ । ସେଇ ପଡ଼ିଆରେ ପଶୁମାନଙ୍କର ମହାସଭା ବସିଲା । ସଭାରେ ବାଘ, ଭାଲୁ, ହାତୀ ହରିଣ, ଠେକୁଆ, ବାର ହା,

ଗଧିଆ, ନେଉଳ, ବିଲୁଆ, ହିଙ୍କ, ସମ୍ବର ଓ କୋକଶିଆଳ ଇତ୍ୟାଦି ସବୁ ବଣୁଆ ପଶୁ ଆଉ ଗାଈ, ବେଳି, ମେଣ୍ଢା, ଗଧ, ଘୋଡ଼ା, ବଲେଇ, ମଇଁଷି, କୁକୁର, ଘୁଷୁରି ଆଦି ସବୁ ଗାଉଁଲି ପଶୁ ଯୋଗ ଦେଇଥିଲେ । ବାଘ ସଭାପତି ଆସନରେ ବସିଲା । ବିଲୁଆ ଠିଆ ହୋଇ କହିଲା—ସଭାପତି ମହାଶୟ ଓ ମୋର ବଣୁଆଁ ଆଉ ଗାଉଁଲି ପଶୁ ଭାଇମାନେ । ମୁଁ ଆଜି ସଭାର ଉଦ୍ଦେଶ୍ୟ ବୁଝାଇବାକୁ ଠିଆ ହୋଇଛି । ଏତେଦିନ ପରେ ଆମେ ସମସ୍ତେ ଏକାଠି ହୋଇଛେ । ସେଥିପାଇଁ ମୁଁ ଆପଣମାନଙ୍କ ତରଫରୁ ଆଗେ ବାଘ ମହାରାଜାଙ୍କୁ ଧନ୍ୟବାଦ ଦେଉଛି । ସଭାରେ ଶ୍ଳୋଗାନ ଶୁଭିଲା—"ବାଘ ମହାରାଜାଙ୍କର ଜୟ ହେଉ) ଆଉ ଆଜି ସବୁଠୁ ଖୁସିର ଦିନ କାରଣ ସମୁଦାୟ ପଶୁକୁଳ ଆମେ ଏକାଠି ହୋଇପାରିଛେ । ଆମ ଭିତରେ ଥିବା ଭେଦଭାବ ଆମେ ଭୁଲିଯିବା । ମନ ଖୁସିରେ ମୋର ପଦେ ଗୀତ ବୋଲିବାକୁ ମନ ହେଉଛି । ଅନୁମତି ଦେଲେ ଗାଇବି । ସଭାରୁ ଶୁଭିଲା—ଗାଅ, ଗାଅ) ବିଲୁଆ କଣ୍ଠଖାଡ଼ି ଗାଇଲା—

ବଣ ପଶୁ ଆଉ ଗାଉଁଲି ପଶୁରେ
ଭେଦାଭେଦ କିଛି ନାହିଁ
ଗରବରେ ମୋର ଛାତି ଫୁଲି ଉଠେ
ସବୁ ପଶୁ ମୋର ଭାଇ ।

ତାପରେ ଗାଈ ଠିଆ ହେଲା । ସେ ଠିଆ ହେଲାବେଳେ ତା' ଦେହ ଥରୁଥାଏ । ସେ କହିଲା ଭାଇମାନେ ଆମେ ସବୁ ପଶୁ ଏକ, ଭାଇଭାଇ । ଏକଥା ଆଜି ଜାଣି ମୁଁ ଖୁସି । କିନ୍ତୁ କଥାରେ କହିଦେଲେ ହେବ ନାହିଁ । ଭାଇ ମାଂସ କିଏ ଭାଇ ଖାଏ ? ଆମକୁ ଯିଏ ମାରି ଖାଏ ସେ ଆମର ଭାଇ

କେମିତି ହବ ? ବରଂ ସେ ଆମର ଶତ୍ରୁ । ଆପଣମାନେ ସମସ୍ତେ ଜାଣନ୍ତି ବାଘ ଆମକୁ ମାରି ଆମର ମାଂସ ଖାଏ । ଆମେ ପଶୁ ହୋଇ ମଧ୍ୟ ବଣକୁ ଯିବାକୁ ଭୟ କରୁ । ତେଣୁ ଆପଣମାନେ ବିଚାର କରନ୍ତୁ ଏପରି ହେଲେ ଆମେ କେମିତି ଭାବିବୁ ସବୁ ପଶୁ ଭାଇ ଭାଇ ? ଆମ ଭିତରେ କେମିତି ଏକତା ରହିବ ?

ଗାଈ ଏତିକି କହି ବସିଲା । ବାଘ ରାଗରେ ପାଟି ଦାନ୍ତ କଡ଼ ମଡ଼ କଲା । ଏତିକିବେଳେ ହରିଣ ଠିଆ ହେଲା । ସେ କହିଲା—ଭାଇମାନେ ! ଗାଈ ଯାହା କହିଲା ନିଘଞ୍ଚ ସତ କଥା କହିଲା । ମୁଁ ବି ଆପଣମାନଙ୍କ ପରି ଜଣେ ପଶୁ । ମୋତେ ବାଘ ମହାରାଜା ମାରି ଖାଇଦେବା ଭୟରେ ମୁଁ ଏଇ ବଣରେ ଆଜି ମଧ୍ୟ ଲୁଚି ଲୁଚି ବୁଲୁଛି ।

ପଶୁ ହୋଇବି ପଶୁ ମାଉଁସ ଆହାର କରେ ଯିଏ
କେମିତି ଆଉ ଭାଇ ଡାକିବ ଥାକୁବା କହ କିଏ ?

ଗାଈ ଆଉ ହରିଣର ଅଭିଯୋଗ ଶୁଣି ବାଘ ଗର୍ଜ୍ଜନ ଛାଡ଼ି ଠିଆ ହେଲା । ଆଖି ବଡ଼ ବଡ଼ କରି କହିଲା—ଏ ଗାଈ ଆଉ ହରିଣ ପରି ମୂର୍ଖ କେହି ନାହିଁ । ସେମାନେ କଣ ଜାଣନ୍ତି ନାହିଁ ସେମାନେ ମୋର ଖାଦ୍ୟ ? ମୁଁ ମାଂସ ନ ଖାଇ ଆଉ କ'ଣ ସେମାନଙ୍କ ପରି ଘାସ ଖାଇବି ?

ସଭାରେ ଫୁସ୍‌ଫାସ୍ ଆରମ୍ଭ ହୋଇଗଲା । କିଏ କେତେ ପ୍ରକାର କଥା କହିଲା । କିନ୍ତୁ ଠିଆ ହୋଇ କେହି କିଛି କହିଲେ ନାହିଁ । ଶେଷରେ ମାଙ୍କଡ଼ ଠିଆ ହୋଇ କହିଲା—ବାଘ ମହାରାଜ ଘାସ ଖାଇବା ଅନ୍ୟାୟ । ସେ ମାଂସ ଖାଆନ୍ତୁ କିନ୍ତୁ ପଶୁ ମାଂସ ଖାଆନ୍ତୁ ନାହିଁ । ମଣିଷ, ମଣିଷ ମାଂସ ଖାଏ ନାହିଁ ।

କିନ୍ତୁ ମଣିଷ ମାଂସ ଖାଏ । ଯେ ପଶୁ ମାଂସ ଖାଏ । ବାଘ ମହାରାଜ ସେମିତି ମାଂସ ଖାଆନ୍ତି କିନ୍ତୁ ପଶୁ ମାଂସ ନଖାଇ ମଣିଷ ମାଂସ ଖାଆନ୍ତି ।

ଭାଲୁଆ ଏ କଥାକୁ ସମର୍ଥନ ଜଣାଇ କହିଲା—ଆମ ଏକତାରେ ଯାହା ବାଧା ସୃଷ୍ଟି କରିବ ସେ କାମ ଆମେ କରିବା ନାହିଁ ।

ହାତୀ କହିଲା—ମାଙ୍କଡ଼ ଯାହା କହିଲା ଠିକ୍ କଥା । ପଶୁ ହୋଇ ଆମେ ପଶୁ ମାଂସ ଖାଇବା ଉଚିତ ନୁହଁ । ଆମର ବର୍ତ୍ତମାନ ସବୁଠାରୁ ବଡ଼ କଥା ହେଉଛି ଏକତା । ଆମ ଭିତରେ ଯେମିତି ଏକତା ବଢ଼ିବ ସମସ୍ତେ ସେଥିପ୍ରତି ନଜର ଦେବା କଥା । ଦରକାର ହେଲେ ଆମକୁ ଖାଦ୍ୟ ଅଭ୍ୟାସ ବଦଳାଇବାକୁ ପଡ଼ିବ ।

ଭାଲୁ ମହାମନ୍ତ୍ରୀ କହିଲେ—ମୁଁ ପ୍ରସ୍ତାବ ଦେଉଛି, ଆଜିଠାରୁ ଆଉ କୋଣସି ପଶୁ, ପଶୁ ମାଂସ ଖାଇବେ ନାହିଁ ।

ଉପସ୍ଥିତ ଥିବା ସମସ୍ତ ପଶୁ କରତାଳି ଦେଇ ଏ ପ୍ରସ୍ତାବକୁ ସମର୍ଥନ ଜଣାଇଲେ । ବାଘ ମହାରାଜ ଆଉ ଉପାୟ ନପାଇ ବାଧ୍ୟ ହୋଇ ସମର୍ଥନ କଲେ । ସେ କହିଲେ—ଭାଇମାନେ ମୁଁ ଏଇ ସଭାରେ ଘୋଷଣା କରୁଛି ଆପଣମାନଙ୍କ ପ୍ରଥମ ପ୍ରସ୍ତାବ ଏ ସଭା ଗ୍ରହଣ କଲା । କୌଣସି ବଡ଼ କାମ କିମ୍ବା ସମୂହ କାମ କରିବାକୁ ଗଲାବେଳେ କେତେକଙ୍କୁ କିଛି କିଛି ତ୍ୟାଗ କରିବାକୁ ପଡ଼ିଥାଏ । ତେଣୁ ଯାହାର ଯାହା ଅସୁବିଧା ହେଲେବି ଆମ ସବୁ ପଶୁମାନଙ୍କର ମଙ୍ଗଳ ପାଇଁ, ଆମର ଏକତା ପାଇଁ ଆମେ ସେ ସବୁ ସହି ନେବା ।

ସମସ୍ତେ ଏକ ସ୍ୱରରେ ବାଘ ମହାରାଜଙ୍କର ଜୟଗାନ କଲେ । ପଶୁ ଜାତି ବାଘ ମହାରାଜଙ୍କର ଏ ତ୍ୟାଗକୁ କେବେ ଭୁଲି ପାରିବ ନାହିଁ ବୋଲି କୁହାକୁହି ହେଲେ ।

ପୁଣି ବାଘ ମହାରାଜ କହିଲେ - ଏଥର ଆଉ କାହାର କଣ କହିବାର ଅଛି କୁହନ୍ତୁ । ଆମେ ଆଜ ଏକାଠି ହୋଇଛେ ଆମର ଯାହା ଯାହା ଅସୁବିଧା ହେଉଛି ଆଲୋଚନା କରିବା ଓ କ'ଣ କଲେ ତାର ସୁବିଧା କରିପାରିବା ସେ କଥା ଚିନ୍ତା କରିବା । ତାର ପ୍ରତିକାର କରିବା ।

ଭାଲୁ ମହାମନ୍ତ୍ରୀ ଠିଆ ହୋଇ କହିଲେ—ଆଗେ ଏଣିଆଡ଼େ ବଣ, ଜଙ୍ଗଲ ଆଉ ପାହାଡ଼ ପର୍ବତରେ ପୂର୍ଣ୍ଣ ଥିଲା । ଜଙ୍ଗଲରେ ବହୁତ ବର୍ଷା ହେଉଥିଲା । ଆମେ ସୁବିଧାରେ ବଣ ଜଙ୍ଗଲରେ ଓ ପାହାଡ଼ ପର୍ବତ ଗୁମ୍ଫାରେ ରହୁଥିଲେ । କିନ୍ତୁ ଆଜକାଲି ମଣିଷମାନେ ବଣ ଜଙ୍ଗଲ ହାଣି ସଫାକରି ଦେଲେଣି । ପାହାଡ ପର୍ବତ ସବୁ କାଟି ସଫା କରି ଦେଲେଣି । କାଲି ଯେଉଁଠି ବଣ ପାହାଡ଼ ଥିଲା ଆଜ ସେଠାରେ ସହର ବଜାର ତିଆରି ହେଉଛି । ମଣିଷ ପ୍ରତିଦିନ ନୂଆ ନୂଆ ବଣ ପାହାଡ଼ କାଟି ସଫା କରୁଛି । ଏମିତି ହେଲେ ଆଉ ବଣ ପାହାଡ଼ ରହିବ ନାହିଁ । ବଣ ପାହାଡ଼ ନ ରହିଲେ ଆମେ ପଶୁମାନେ ରହିବା କେଉଁଠି ?

ମଣିଷ କାଟୁଛି ନିତ ନିତ ବଣ ଭାଙ୍ଗୁଛି ପାହାଡ଼ ପଥର
ସବୁ ସଫାକରି କରେ ଚାଷଜମି ଗଢ଼ୁଅଛି ଗାଆଁ ସହର ।
କିଛିଦିନ ଆଉ ଏମିତି ଚାଲିଲେ, ରହିବନି ବଣ ଜଙ୍ଗଲ
ମନେ ମୋ ଭାବିଲେଣି ରହିବା କେଉଁଠି, ରହିବନି ଯଦି ଜଙ୍ଗଲ ?

ସମସ୍ତେ କହିଲେ ହଁ ହଁ, ଭାଲୁ ମହାମନ୍ତ୍ରୀ ଯାହା କହିଲେ ତାହା ଠିକ । ବଣ ନରହିଲେ ଆମେ ରହିବା କେଉଁଠି ?

ମାଙ୍କଡ଼ କହିଲା—ଏହାର କିଛି ପ୍ରତିକାର କରିବାକୁ ହେବ । ମଣିଷ ନିଜେ

ଶ ବୁଝିପାରୁ ନାହିଁ ବଣରୁ ସେ କେତେ ଉପକାର ପାଏ । ଜଙ୍ଗଲ ଥିବାରୁ ବର୍ଷା ହୁଏ । ସମସ୍ତେ ପାଣି ପାଆନ୍ତି । ଗଛ ନାନା ଫଳ ଦେଇଥାଏ । ଗଛର ଛାଇ ଶୀତଳ ଲାଗେ । ଗଛରୁ ଅନେକ ପ୍ରକାର ଔଷଧ ମିଳେ । ଚାଲ ମଣିଷକୁ ଆମେ ବୁଝାଇବା—ଜଙ୍ଗଲ ପଶୁ ଓ ମଣିଷ ଉଭୟଙ୍କ ଜାତୀୟ ସମ୍ପଦ । ଏହା ପଶୁମାନଙ୍କର ଯେତିକି ଦରକାର ମଣିଷମାନଙ୍କର ତାଠାରୁ ବେଶୀ ଦରକାର । ତେଣୁ ବଣ ଜଙ୍ଗଲ କାଟି ସଫା କରିବା ଉଚିତ ନୁହଁ ।

ହାତୀ କହିଲା—ମଣିଷ ଭାରି ସ୍ୱାର୍ଥପର । ସିଏ କାହା କଥା ଶୁଣିବ ନାହିଁ । ମଣିଷ ଆମର ସବୁଠୁ ବଡ଼ ଶତ୍ରୁ । ସେ ଆମକୁ ବିଭିନ୍ନ ଭାବରେ ହଇରାଣ କରୁଛି । ବଣରେ ପଶି ହରିଣ, ବାରହା, ଠେକୁଆ, ସମ୍ବର ଆଦି ପଶୁମାନଙ୍କୁ ଶିକାର କରି ନେଇ ସେମାନଙ୍କ ମାଂସ ଖାଏ । ଆଉ ଯେଉଁ ପଶୁମାନଙ୍କ ମାଂସ ନଖାଏ ସେମାନଙ୍କୁ ମଧ୍ୟ ମଣିଷ ମାରେ । ବାଘ, ହାତି, ଭାଲୁ, ମାଙ୍କଡ଼, ନେଉଳ ଇତ୍ୟାଦି ପଶୁମାନଙ୍କୁ ଜିଅନ୍ତା ଧରି ନେଇ ସେମାନଙ୍କୁ ବଡ଼ ହଇରାଣ କରେ । କାହା ଉପରେ ବସି ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଯାଏ । ଆଉ କାହାକୁ ନେଇ ସର୍କସ କରାଏ । କେତେକଙ୍କ ସାଙ୍ଗରେ ଖେଳେ ।

ତାପରେ ଗଧ ଠିଆ ହୋଇ କହିଲା—ମଣିଷ ବଣୁଆ ପଶୁମାନଙ୍କୁ ଯେମିତି ହଇରାଣ କରେ ଗାଉଁଲି ପଶୁଙ୍କୁ ସେମିତି ହଇରାଣ କରେ । ଛେଳି, ମେଣ୍ଢାଙ୍କୁ ମାରି ସେମାନଙ୍କ ମାଂସ ଖାଏ । ଘୋଡ଼ା, ଗଧ, ବଳଦଙ୍କୁ ମାଲ ବୋହିବାରେ କିମ୍ବା ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ବ୍ୟବହାର କରେ । ଆମ ଦେହପା ଭଲ ଥାଉ ନଥାଉ, ଆମେ କ'ଣ ଖାଇଥାଉ ନଖାଇଥାଉ ତାଙ୍କ କାମରେ ଆମକୁ ଖଟାଏ । ଟିକେ ହେଳା କଲେ କଠିନ ଦଣ୍ଡ ଦିଏ ।

ସମସ୍ତେ ଏକ ସ୍ୱରରେ କହିଲେ—ମଣିଷ ଆମର ବହୁତ କ୍ଷତି କରୁଛି । ମଣିଷ ଆମର ସବୁଠୁ ବଡ଼ ଶତ୍ରୁ ।

ବାଘ ମହାରାଜ କହିଲେ—ଆମେ ସମସ୍ତେ ଏକମତ ଯେ ମଣିଷ ଆମର ପ୍ରଧାନ ଶତ୍ରୁ । ଆମେ କଣ କଲେ ମଣିଷ ହାତରୁ ରକ୍ଷା ପାଇବା ବର୍ତ୍ତମାନ ସେକଥା ଆଲୋଚନା କରାଯାଉ ।

ମାଙ୍କଡ ଠିଆ ହୋଇ ପ୍ରସ୍ତାବ ଦେଲା—ଆମେ ସମସ୍ତେ ଦଳ ଦଳ ହୋଇ ପ୍ରତି ଗାଁକୁ ଯାଇ ମଣିଷମାନଙ୍କୁ ଏ ବିଷୟରେ ବୁଝାଇବା । ଆମର ଶତ୍ରୁତା ନକରିବାକୁ ଅନୁରୋଧ କରିବା ।

ସମସ୍ତେ ମାଙ୍କଡ଼ର ଏ କଥାକୁ ବିରୋଧ କଲେ । ସମସ୍ତେ କହିଲେ—ଆମ କଥା ମଣିଷମାନେ ଆଦୌ ବୁଝିପାରିବେ ନାହିଁ । ମିଛଟାରେ କାହିଁକି ତାଙ୍କ ଆଗରେ ବକର ବକର ହେବା ?

ବାଘ ମହାରାଜ କହିଲେ—ଚାଲ ଆମ ପଶୁକୁଳ ସମସ୍ତେ ଗୋଟିଏ ଖାଦ୍ୟ ଖାଇବା । ତାହା ହେଉଛି ମଣିଷ ମାଂସ । ମଣିଷ ଆମର ଯେତେ କ୍ଷତି କରୁଛି ତାର ଉପଯୁକ୍ତ ପ୍ରତିଶୋଧ ନେବାପାଇଁ ମୁଁ ଆଉ କେଉଁ ବାଟ ଦେଖୁନାହିଁ । ଆମେ ସମସ୍ତେ ମଣିଷ ମାଂସ ଖାଇଲେ ଖାଦ୍ୟ ଚିନ୍ତା ଆମର ଆଉ ରହିବ ନାହିଁ । ମଣିଷମାନଙ୍କ ସଂଖ୍ୟା କିଛି ଅଂଶରେ କମିଗଲେ ସେମାନେ ଆ । ଉପରେ ଏତେ ଉତ୍ପାତ କରିପାରିବେ ନାହିଁ ।

ସମସ୍ତେ ପୁଣି ପାଟି କଲେ—ବାଘ ମହାରାଜ ଯାହା କହିଲେ ସେ କାମ କେବଳ ସେ କରି ପାରିବେ । ଆମେ ମଣିଷକୁ କେମିତି ମାରିବୁ ନା ତା ମାଂସ କେମିତି ଖାଇବୁ ?

ଭାଲୁ ମହାମନ୍ତ୍ରୀ କହିଲେ – ତେବେ ଆମେ ଆଉ ଗୋଟିଏ କାମ କରିବା । ବଣୁଆଁ ପଶୁ ଓ ଗାଉଁଲି ପଶୁ ସମସ୍ତେ ବଣରେ ରହିବା ଆଉ ବଣକୁ ଭଲ ଭାବରେ ଜଗିବା । ମଣିଷ ବଣକୁ ଆସିଲେ ତାକୁ ମାରି ତାର ମାଂସ ଖାଇଯିବା ।

କଲୁଆ କହିଲା – ମଣିଷକୁ ତୁମେ ଏତେ ତୁଚ୍ଛ ବୋଲି ମନେ କରନା । ତା ହାତରେ ଗୁଳି ବନ୍ଧୁକ ଅଛି । ସିଏତ ଆମକୁ ମାରିବ ଆମେ କ'ଣ ତାକୁ ମାରିବା ?

ପଶୁମାନଙ୍କ ଭିତରେ ପୁଣି ଗୋଳେଇ ପଡ଼ିଲା । ବଣୁଆଁ ପଶୁମାନେ କହିଲେ—ଯଦି ମଣିଷ ବଣ ଜଙ୍ଗଲ କାଟିବା ବନ୍ଦ ନକଲେ ତେବେ ଆମେ ରହିବା କେଉଁଠି ? ସବୁଠି ଗାଁ, ସହର, ବଜାର, ବିଲ, ବାଡ଼ି କରି ମଣିଷ ଆନନ୍ଦରେ ଚଳିବ । ଆମେ ଚଳିବା କେଉଁଠି ?

ବାଘ ମହାରାଜ ପୁଣି କହିଲେ – ଯଦି ମଣିଷ ବଣ ଜଙ୍ଗଲ କାଟିବା ଆମେ ତାକୁ ବନ୍ଦ କରିପାରିବା ନାହିଁ, ତେବେ ଆମେ ଚାଲ ଗାଁ, ସହର ବଜାରରେ ରହିବାକୁ ଅଭ୍ୟାସ କରିବା । ଆମ ଭିତରୁ ଆମର ଗାଉଁଲି ପଶୁମାନେ ଯେମିତି ଗାଆଁ ଗଣ୍ଡାରେ ରହୁଛନ୍ତି ଆମେ ଚାଲ ତାଙ୍କର ସାଙ୍ଗରେ ସେମିତି ରହିବାର ଅଭ୍ୟାସ କରିବା । ତାହେଲେ ବଣ, ଜଙ୍ଗଲ ନ ରହିଲେ ବି ଆମର କିଛି ଅସୁବିଧା ହେବ ନାହିଁ ।

ପଶୁମାନେ କହିଲେ – ନା, ଅସମ୍ଭବ । ଆମେ ମଣିଷକୁ ଜଙ୍ଗଲ କାଟିବାକୁ କିମ୍ବା ଅତ୍ୟାଚାର କରିବାକୁ ଦେବୁ ନାହିଁ । ଆମେ ମଣିଷ ବିରୁଦ୍ଧରେ ବିପ୍ଳବ କରିବୁ, ବିଦ୍ରୋହ କରିବୁ ।

ଭାଲୁ ମହାମନ୍ତ୍ରୀ କହିଲେ – ତେବେ ଚାଲ ମଣିଷର କାମକୁ ପ୍ରତିବାଦ

କର ଗାଁ ଆଡ଼କୁ ଗୋଟିଏ ଶୋଭାଯାତ୍ରାରେ ସମସ୍ତେ ଯିବା । ଆମ ସମସ୍ତଙ୍କୁ ଗାଁ ଭିତରେ ଦେଖିଲେ ମଣିଷମାନେ ନିଶ୍ଚୟ କଥାଟା ବୁଝି ପାରିବେ ।

ଭାଲୁଆ କହିଲା—ହଁ, ମଣିଷ ନିଶ୍ଚୟ ଏ କଥା ବୁଝିବ । କାରଣ ଏବେ ମଣିଷମାନେ ସେମାନଙ୍କର ଅସନ୍ତୋଷ ଏମିତି ସଭା କି ଶୋଭାଯାତ୍ରା କରି ପ୍ରକାଶ କରୁଛନ୍ତି ।

ଏଇ କଥାଟି ସମସ୍ତଙ୍କ ମନକୁ ପାଇଲା । କରତାଳି ଦେଇ ସମସ୍ତେ ସମର୍ଥନ ଜଣାଇଲେ ।



ତା'ପରଦିନ ସକାଳୁ ସବୁ ବଣୁଆଁ ପଶୁ ଓ ଗାଉଁଲି ପଶୁମାନଙ୍କର ଗୋଟିଏ ପଟୁଆର ଗାଁ ଆଡକୁ ଚାଲିଲା । ସେମାନେ ସ୍ଲୋଗାନ ଦେଉଥିଲେ – ଗଛ କାଟିବା ବନ୍ଦ ହେଉ. ଗାଉଁଲି ପଶୁ ଓ ବଣୁଆ ପଶୁମାନଙ୍କ ଉପରୁ ମଣିଷମାନଙ୍କର ଜୁଲମ ବନ୍ଦ ହେଉ । ମଣିଷର ଅତ୍ୟାଚାର ବନ୍ଦ ହେଉ । ମଣିଷର ଶୋଷଣ ବନ୍ଦ ହେଉ । ପଶୁକୁଳର ଏକତା ଜିନ୍ଦାବାଦ ।

# ଠକ ବୁଢ଼ା ମାଙ୍କଡ

ବଣରେ ଗୋଟିଏ ବୁଢ଼ା ମାଙ୍କଡ ଥିଲା । ସେ ଏତେ ବୁଢ଼ା ହୋଇଗଲା ଯେ ଗଛ ଚଢ଼ି ପାରିଲା ନାହିଁ । ତାର ପୁଅ ଝିଅ କେହି ନଥିଲେ । ତେଣୁ ସେ ଖାଇବାକୁ ନ ପାଇ ବଡ଼ ହଇରାଣ ହେଲା । ଅନ୍ୟ ଯୁବମାଙ୍କଡମାନଙ୍କୁ ସେ ନେହୁରା ହୋଇ ଆମ୍ବ କଷିଟାଏ କି ପିଜୁଳି କଷିଟାଏ ମାଗି ମାଗି ହବଶ ହେଲା । ବଣରେ ଆଉ ଭୋକ ଉପାସରେ ରହି ନପାରି ଗାଁ ଭିତରେ ପଶି କାହା ବାଡ଼ରୁ ଜହ୍ନି ଆଉ କାହା ବାଡ଼ରୁ ମକା ନେଇ ଖାଇଲା । କିନ୍ତୁ ଗାଁ ଲୋକ ଏକାଠି ମିଶି ତାକୁ ଟେକା ଫିଙ୍ଗିଲେ । କାଣ୍ଡଶର ବର୍ଷିଲେ । ବୁଢା ମାଙ୍କଡ ଜୀବନ ନେଇ ଭୟରେ ପୁଣି ବଣ ଭିତରକୁ ଫେରି ଆସିଲା । ଭୋକ ଉପାସରେ ଗଛ ମୂଳରେ ବସି ରହିଲା ।



ହଠାତ୍ ତା ମୁଣ୍ଡରେ ଗୋଟିଏ ବୁଦ୍ଧି ଉଙ୍କିଲା । ସେ ସକାଳୁ ଉଠି ବାଘ ରଜାର ଦରବାରରେ ପହଞ୍ଚିଲା । ସେଠାରେ ସେନାପତି ଗଧିଆ, ମହାମନ୍ତ୍ରୀ ଭାଲୁ ଇତ୍ୟାଦି ଜଣଙ୍କେ ସବୁ ପଶୁ ବସିଥିଲେ । ମାଙ୍କଡ଼ ଅଣ୍ଟା ନୁଆଁଇ ବାଘ ରାଜାଙ୍କୁ ଗୋଟିଏ ପ୍ରଣାମ ପକାଇ ସଭାର ଗୋଟିଏ କଡ଼କୁ ବସିଲା । ସେତେବେଳେ ଦରବାର ଆରମ୍ଭ ହେଉଥାଏ । ମହାରାଜ ବାଘ କହିଲେ—ମୋ ରାଜ୍ୟରେ କୌଣସି ଅସୁବିଧା ନାହିଁ । ବଣ ମଝିରେ ମୁଁ ଗୋଟିଏ ପୋଖରୀ ଖୋଳାଇଛି । ଏ ବଣରେ ବହୁତ ଭଲ ଫଳଗଛ ଲଗାଇଛି । ଶିକାରୀମାନେ ବଣକୁ ଆସିବାକୁ ଭୟ କରୁଛନ୍ତି । ଏବେ ତୁମେମାନେ କୁହ ଆଉ କାହାର କି ପ୍ରକାର ଅସୁବିଧା ଅଛି ।

କେହି କିଛି କହିଲେ ନାହିଁ । ସମସ୍ତେ ଚୁପ୍ ରହିବାରୁ ଭାଲୁ ମହାମନ୍ତ୍ରୀ ଠିଆ ହୋଇ କହିଲା—ନାଁ ମହାରାଜ ! କାହାର କିଛି ଅସୁବିଧା ନାହିଁ ।

ବୁଢ଼ା ମାଙ୍କଡ଼ ହାତଯୋଡ଼ି ଠିଆ ହେଲା । ଟିକେ ଆଗକୁ ପଛକୁ ଚାହିଁ ଡ଼ର ଡ଼ର ଆରମ୍ଭ କଲା—ମହାରାଜ ! ମୋର ଗୋଟିଏ କଥା କହିବାର ଅଛି । ହଜୁର ଅନୁମତି ଦେଲେ କହିବ ।

ବାଘ କହିଲା—ନିର୍ଭୟରେ କୁହ । ନିଜ ମନକଥା କହିବାକୁ ଭୟକଲେ ବଞ୍ଚିବାରେ କିଛି ଲାଭ ନାହିଁ । ଭୟ ନ ଛାଡ଼ିଲେ ଜୀବନରେ ତୁମେ କୌଣସି କାମ କରି ପାରିବ ନାହିଁ । କୁହ, କ'ଣ କହିବାର ଅଛି ।

ବୁଢ଼ା ମାଙ୍କଡ କାନ କୁଣ୍ଡାଇ କହିଲା ହଜୁର ! କାଲି ରାତିରେ ମୁଁ ଗୋଟିଏ ସ୍ୱପ୍ନ ଦେଖିଲି । ମୁଁ ସ୍ୱପ୍ନରେ ଦେଖିଲି ଯେ ମୁଁ ସ୍ୱର୍ଗ ପୁରରେ ପହଞ୍ଚି

ଯାଇଛୁ । କେଡେ ସୁନ୍ଦର ସେ ସ୍ୱର୍ଗ । କେତେ ସୁନ୍ଦର ସୁନ୍ଦର କୋଠାଘର ଫଲ ବଗିଚା । ରାସ୍ତାର ଦୁଇକଡରେ ଧାଡ଼ି ଧାଡ଼ି ଆମ୍ବ ଗଛ । କି ସୁନ୍ଦର ଆମ୍ବ ସେ ଗଛରେ । ସେଠି ମୁଁ ଦେଖିଲି ସବୁ ଦେବ ଦେବୀ ମହା ଖୁସିରେ ବୁଲାବୁଲି କରନ୍ତି । ସମସ୍ତଙ୍କ ମୁହଁରେ ହସ । ହ ଆଉ ଗୋଟିଏ କଥା । ସେଠି ମୁଁ ଦେଖିଲି ଦେବ ଦେବୀ ସ୍ୱର୍ଗର ବାହାଣ ପଟେ ରହୁଛନ୍ତି । ଆଉ ବାଁ ପଟକୁ ମଣିଷମାନେ ରହୁଛନ୍ତି । ମୁଁ ଆଉ ଟିକେ ଭିତରକୁ ପଶି ଖୋଜିଲି କିନ୍ତୁ ଆମ ପଶୁମାନଙ୍କ ଭିତରୁ କାହାକୁ ହେଲେ ସ୍ୱର୍ଗପୁରରେ ପାଇଲି ନାହିଁ ।

ବାଘ ଗର୍ଜନ କରି କହିଲା—ତୁମେ ଭଲ ଭାବରେ ଖୋଜିଲ ନାହିଁ କି ଆଉ କାହାକୁ ପଚାରିଲ ନାହିଁ ?

ମାଙ୍କଡ କହିଲା—ମହାରାଜ ! ମୁଁ ସ୍ୱର୍ଗପୁରର ଗଳି କନ୍ଦି ସବୁ ଖୋଜିଲି କିନ୍ତୁ ଗୋଟିଏ ହେଲେ ପଶୁ ପାଇଲି ନାହିଁ । ତେଣୁ ଜଣେ ଦେବତାଙ୍କୁ ପଚାରିଲି, ଏଠିତ ମଣିଷମାନେ ଅଛନ୍ତି, ପଶୁମାନେ କୁଆଡ଼େ ଗଲେ ? ସେ କହିଲେ—ତୁମେ ଜାଣିନା ପରା । ସବୁ ପଶୁ ନରକରେ ରହନ୍ତି । ତମେତ ଜଣେ ପଶୁ, ତମେ ଏଠିକି କେମିତି ଆସିଲ ? ଯଦି ଭଲ ଚାହୁଁଛ, ଶୀଘ୍ର ସ୍ୱର୍ଗପୁର ଛାଡ଼ି ଚାଲିଯାଅ ।

ସ୍ୱର୍ଗପୁରରୁ ବାଟ ପଚାରି ପଚାରି ମୁଁ ବହୁ କଷ୍ଟରେ ନରକ ପୁରରେ ପହଞ୍ଚିଲି । ନରକପୁର ରାସ୍ତା ଭାରି ଖରାପ । ନରକ ପୁରଟା ଭାରି ଦୁର୍ଗନ୍ଧ । ମଣିଷ, ପଶୁ, ପକ୍ଷୀଙ୍କ ବିକଳ ଚିତ୍କାରରେ କାନ ଫାଟିଗଲା ପରି ଲାଗିଲା । ଦେଖିଲି ମଣିଷମାନେ କିଏ ଗରମ ତେଲ କୁଣ୍ଡରେ ପଡ଼ି ଛଟପଟ ହେଉଛି, କିଏ ଜଳନ୍ତା ନିଆଁ ଭିତରେ ପଶି ଚିତ୍କାର କରୁଛି । କାହାର ବେକ ପର୍ଯ୍ୟନ୍ତ କାଦୁଅ ପଙ୍କରେ ପୋତା ଯାଇଛି ।

ବାଘ ପୁଣି ପଚାରିଲା—ଆଚ୍ଛା, ସେଠି ପଶୁମାନେ କ'ଣ କରୁଥିଲେ ?

ମାଙ୍କଡ଼ ଏଥର କାନ୍ଦ କାନ୍ଦ ହୋଇ କହିଲା—କଣ କହିବ ମହାରାଜ, ସେ ଯେଉଁ କଷ୍ଟ ମୋ ଛାତି ଫାଟିଗଲା ପରି ଲାଗିଲା । ମୁଁ ଦେଖିଲି ବଳୁଆମାନେ ଗୋଟିଏ ମଇଳା ପୋଖରୀ ଭିତରେ ଢୁଡ଼ ଉବୁଟୁବୁ ହେଉଥିଲେ । ସେମାନେ ପ୍ରାଣ ବିକଳରେ କୂଳକୁ ଲାଗି ଆସିଲା ବେଳକୁ ଯମଦୂତମାନେ ତାଙ୍କ ଦେହରେ ତତଲା ଲୁହାରେ ଚୁଆଁ ଦେଉଥିଲେ । ପୁଣି ସେମାନେ ପ୍ରାଣ ବିକଳରେ ପୋଖରୀ ମଝିକୁ ପହଁରି ଯାଉଥିଲେ ।

ଭାଲୁମାନେ ମଇଳା ବୋହେଇ ଗାଡ଼ି ଟାଣୁଥିଲେ । ଗାଡ଼ିରେ ଜଣେ ଯମଦୂତ ବସି ସେମାନଙ୍କୁ ନିର୍ଦ୍ଦୟ ପିଟୁଥିଲା । ବାଘମାନଙ୍କ ଅବସ୍ଥା ଅତିଶ ସାଙ୍ଘାତିକ । ବାଘମାନଙ୍କୁ ବାନ୍ଧି ଦିଆଯାଇଥିଲା । ସେମାନଙ୍କ ପାଟି ଭିତରେ ନିଆଁରେ ପାଚି ଲାଲ ଦେଖା ଯାଉଥିବା ଲୁହା ଖଣ୍ଡ ଭର୍ତ୍ତି କରାଯାଉଥିଲା



ସେମାନଙ୍କର ଦାନ୍ତ ଗୁଡ଼ାକୁ ଭାଙ୍ଗି ଦିଆଯାଉଥିଲା । ଆଉ କେତେକ ବାଘଙ୍କ ତଣ୍ଟିରେ ଦଉଡ଼ି ବାନ୍ଧି ଗଛରେ ଝୁଲାଇ ଦିଆଯାଇ ତଳୁ ତତଲା ଛଡ଼ରେ ମାଡ଼ ଦିଆଯାଉଥିଲା ।

ବାଘ ପଚାରିଲା—ଏମିତି କାହିଁକି ହେଉଥିଲା ? ତୁମେ ପଚାରି ବୁଝିଲ ନାହିଁ ?

ମାଙ୍କଡ଼ କହିଲା—ମୁଁ ପଚାରିଛି ଆଜ୍ଞା । ଜଣେ ଯମଦୂତ କହିଲା, ପଶୁମାନେ ବହୁତ ପାପ କରିଛନ୍ତି । ତେଣୁ ତାଙ୍କୁ ନରକପୁରରେ ରଖାଯାଇ ଏମିତି କଷ୍ଟ ଦିଆଯାଉଛି । ମୁଁ ତାକୁ ପଚାରିଲି, ମଣିଷମାନେତ ପାପ କରୁଛନ୍ତି, କାହିଁ ସବୁ ମଣିଷତ ଏ ନରକପୁରରେ ନାହାନ୍ତି ? ଦଳେ ମଣିଷ ସ୍ୱର୍ଗପୁରରେ ଅଛନ୍ତି, ଆଉ ଦଳେ ନରକରେ ଅଛନ୍ତି । କିନ୍ତୁ ଆମ ପଶୁ ଭାଇମାନେ ସମସ୍ତେ କାହିଁକି ଏ ନରକପୁରରେ ପଡ଼ି କଷ୍ଟ ପାଉଛନ୍ତି ? ସେ କହିଲା—ମଣିଷମାନେ ପାପ କରନ୍ତି ସତ କିନ୍ତୁ ସେମାନେ ଭଗବାନଙ୍କୁ ପୂଜା କରନ୍ତି । ତେଣୁ ତାଙ୍କର ପାପ ନଷ୍ଟ ହୋଇ ଧର୍ମ ହୁଏ । ଧର୍ମ ବଳରୁ ସେମାନଙ୍କ ଭିତରୁ କେତେକ ସ୍ୱର୍ଗପୁରକୁ ଯାଆନ୍ତି । ଯିଏ ଭଗବାନଙ୍କୁ ପୂଜା କରେ ନାହିଁ ସେ ଏ ନରକପୁରକୁ ଆସେ । ତମ ପଶୁ ଭିତରୁ କେହି ଜଣେ ହେଲେ ଭଗବାନଙ୍କୁ ପୂଜା କରୁନା । ତେଣୁ ମଲାପରେ ସବୁ ପଶୁ ନରକପୁରକୁ ଆସି କଷ୍ଟ ପାଉଛନ୍ତି ।

ମୁଁ ସେ ଯମଦୂତକୁ ଅନୁରୋଧ କରି କହିଲି- ଭାଇ, ମୋତେ ଟିକେ କୁହ, କ'ଣ କଲେ ଆମେ ପଶୁମାନେ ସ୍ୱର୍ଗପୁରକୁ ଯାଇ ପାରିବୁ ?

ସେ କହିଲା—ତମେ ବଣରେ ପଥରର ଗୋଟିଏ ଦେଉଳ ତିଆରି କରି ଓ ତା ଭିତରେ ଠାକୁର ମୂର୍ତ୍ତି ରଖି ସକାଳେ ଓ ସଂଧ୍ୟାବେଳେ ପୂଜାକର ।

ଠାକୁରଙ୍କ ପାଖରେ ଭଲ ଭଲ ଫଳ ଭୋଗ ଲଗାଅ । ତା' ହେଲେ ତୁମର ଧର୍ମ ହେବ । ତୁମେମାନେ ସ୍ୱର୍ଗପୁରକୁ ଯାଇ ପାରିବ ।

ମୁଁ ତାକୁ ବହୁତ ଖୋସାମତ କରି ତା'ଠାରୁ ଭଗବାନଙ୍କୁ ପୂଜା କରିବାର ଉପାୟ ଶିଖି ଆସିଲି । ମହାରାଜ, ମୁଁ ଆପଣଙ୍କ ପାଖରେ ଏତିକି ଗୁହାରି କରୁଛି ଯେ ଆମ ପଶୁକୁଳକୁ ନରକପୁରରୁ ଉଦ୍ଧାର କରନ୍ତୁ । ବେଶୀ କଷ୍ଟ ନାହିଁ, ଖାଲି ଗୋଟିଏ ପଥର ଦେଉଳ ତୋଳାଇ ଦେଲେ ହେଲା । ମୁଁ ପାଖ ଗାଁ ଭିତରକୁ ଯାଇ ଗୋଟିଏ ଭଗବାନ ମୂର୍ତ୍ତି କୋଉଠୁ ହେଲେ ନେଇ ଆସିବି ।

ସେନାପତି ଗଧିଆ କହିଲା-ମହାରାଜ ଅପଣ ଆଦେଶ ଦେଲେ ଆଠଦିନ ଭିତରେ ଆମେ ଗୋଟିଏ ଦେଉଳ ତିଆରି କରିଦେବୁ ।

ଭାଲୁ କହିଲା – ହଁ, ମଣିମା, ! ଖାଲି ଆପଣଙ୍କ ଆଦେଶ ହେଲେ ଗୋଟାଏ କାହିଁକି ପାଞ୍ଚ ପାଞ୍ଚଟା ଦେଉଳ ଆମେ ତିଆରି କରିଦେବୁ ।

ବାଘ କହିଲା—ନାଁ, ଆଉ ବେଶୀ କାଳ ଅମ ପଶୁ ଭାଇମାନଙ୍କୁ ନରକ-ପୁରରେ ସଢ଼ିବାକୁ ମୁଁ ଦେବି ନାହିଁ । ସେନାପତି ଗଧିଆ, ମହାମନ୍ତ୍ରୀ ଭାଲୁ ତୁମେ ଏଇ ସାତଦିନ ଭିତରେ ଦେଉଳ ତିଆରି କର । ହଁ ଶୁଣ ମାଙ୍କଡ଼, ତୁମେ ଅତି ଶୀଘ୍ର ଯାଇ ଗୋଟିଏ ଭଗବାନ ମୂର୍ତ୍ତି କେଉଁଠୁ ଆଣ । ସବୁ ଠିକ ଠାକ୍ କର । ମୁଁ ଆସନ୍ତା ସୋମବାର ଦିନ ଦେଉଳ ଉଦ୍‌ଘାଟନ କରିବି । ସବୁ ପଶୁମାନଙ୍କୁ ଜଣାଇ ଦେବ, ସେମାନେ ସେଦିନ ଭିନ୍ନ ଭିନ୍ନ ମିଠାଫଳ ଆଣି ଭଗବାନଙ୍କୁ ପୂଜା କରିବାକୁ ଆସିବେ । ମାଙ୍କଡ଼ ତୁମେ ନିଯ୍ୟମିତ ଭଗବାନଙ୍କୁ

ପୂଜା କରିବ ଓ ଦେଉଳ ବେଢ଼ାରେ ରହିବ ।

ସେଦିନ ଏତିକିରେ ରାଜଦରବାର ମଉଳିଲା । ସମସ୍ତେ ମହା ଖୁସିରେ ଦେଉଳ ତିଆରିରେ ଲାଗିପଡ଼ିଲେ । ପାହାଡ଼ରୁ ଖଣ୍ଡ ଖଣ୍ଡ ପଥର ବୋହି ଆଣି ଦିନ ଦୁଇଟାରେ ଦେଉଳ ଠିଆ କରାଇଦେଲେ । ପାଖ ଗାଁକୁ ଯାଇ ବୁଢ଼ା ମାଙ୍କଡ଼ ଗୋଟିଏ ଭଗବାନ ମୂର୍ତ୍ତି ଚୋରାଇ ଆଣିଲା ।

ଖୁବ୍ ଜାକ୍‌ଜମକରେ ସୋମବାର ଦିନ ଦେଉଳ ଉଦ୍‌ଘାଟନ ହୋଇ-ଗଲା । ସବୁ ପଶୁ ହାତରେ ବିଭିନ୍ନ ପ୍ରକାର ମିଠା ଫଳ, ବାସନା ଫୁଲ ଧରି ଦେଉଳ ମୁହଁରେ ରୁଣ୍ଡ ହେଲେ । ବୁଢ଼ା ମାଙ୍କଡର ଗୋଡ଼ ଖୁସିରେ ତଳେ ଲାଗୁନଥାଏ । ପୂଜା ସରିଲା, ଯିଏ ଯୁଆଡେ଼ ଗଲେ । ସବୁ ଫଳକୁ ଏକାଠି କରି ବୁଢ଼ା ମାଙ୍କଡ଼ ଦେଖିଲା, ସେ ଫଳତକ ତାର ୮ ଦିନର ଖାଦ୍ୟ । ଦେଉଳ ଭିତରୁ କବାଟ ଲଗାଇ ଦେଇ ପେଟେ ଫଳ ଖାଇଲା, ବାକି ଫଳତକ ପଶୁ ଛୁଆମାନଙ୍କୁ ବାଣ୍ଟିଦେଲା ।

ଏମିତି ପ୍ରତିଦିନ ସକାଳେ ସଞ୍ଜେ ସବୁ ପଶୁ ଫଳ, ଫୁଲ ଧରି ପୂଜା କରିବାକୁ ଆସିଲେ । ବୁଢା ମାଙ୍କଡ଼ ପେଟ ଭରି ଖାଏ, ବାକିତକ ପଶୁଛୁଆ ମାନଙ୍କୁ ବାଣ୍ଟେ । କିଛିଦିନ ଏମିତି ବସି ଖାଇବାରୁ ବୁଢ଼ା ମାଙ୍କଡ଼ ଅତି ମୋଟା ହୋଇଗଲା ।

ବିଲୁଆ ମନରେ ସନ୍ଦେହ ହେଲା । ସେ ମନେ ମନେ ଭାବିଲା—ଏ ବୁଢା ମାଙ୍କଡ଼ ଖାଇବାକୁ ନପାଇ ମଲାପରି ହୋଇଥିଲା । ଏବେ କ'ଣ ଖାଇ ଏମିତି ମୋଟା ହୋଇଛି ?

ବୁଢ଼ା ମାଙ୍କଡ଼ର କାରସାଦ୍ଧ ଜାଣିବା ପାଇଁ ସେ ଦିନେ ଛପି ଛପି ଯାଇ ଦେଉଳ ଭିତରେ ଭଗବାନ ମୂର୍ତ୍ତି ପଛ ପଟରେ ଲୁଚିଗଲା । ସଞ୍ଜବେଳକୁ ସବୁ ପଶୁ ଫଳ ଫୁଲ ଧରି ପୂଜା କରିବାକୁ ଆସିଲେ । ବୁଢ଼ା ମାଙ୍କଡ ସେମାନଙ୍କ-ଠାରୁ ସବୁ ଫଳ, ଫୁଲକୁ ନେଇ ପୂଜା କରିବ ବୋଲି ଦେଉଳ ଭିତରେ ପଶିଲା । ଭିତରୁ କବାଟ ବନ୍ଦ କରିଦେଲା । ଫୁଲକୁ ଭଗବାନମୂର୍ତ୍ତି ଉପରେ ଅଜାଡ଼ି ଦେଲା । ଫଳତକ ନେଇ ଗୋଟାକ ପରେ ଗୋଟେ ଖାଇବାରେ ଲାଗିଲା । ବିଲୁଆ ଏସବୁ ଦେଖି ରାଗରେ ଦାନ୍ତ କାମୁଡ଼ି ହେଲା । ଏମିତି ଅଧ-ଘଣ୍ଟାଏ କାଳ ମନ ଇଚ୍ଛା ଖାଇ ସାରିଲାପରେ ବୁଢ଼ାମାଙ୍କଡ଼ ଦେଉଳର ଦୁଆର ଖୋଲି ବାହାରିଲା । ବାକି ଫଳତକ ପଶୁଗୁଡ଼ିକୁ ଆମାନଙ୍କୁ ବାଣ୍ଟିଦେଲା ।

ବିଲୁଅ ଧୀରେ ଧୀରେ ଦେଉଳରୁ ବାହାରି ଯାଇ ମହାରାଜ ବାଘ ପାଖରେ ପହଞ୍ଚି ସବୁ କଥା କହିଲା । ବାଘ ଏକଥା ଶୁଣି ଖୁବ୍ ବଡ଼ ଗର୍ଜ୍ଜନ କଲା । ସେ



ଗର୍ଜ୍ଜନରେ ବଣଟା କମ୍ପି ଉଠିଲା । ବାଘ ଖଜ୍ଲା ବେଗରେ ଦେଉଳ ଆଡ଼କୁ ଧାଇଁଲା ।

ବାଘ ସ୍ବଗରେ ଗର୍ଜ୍ଜନ କର ଆସି ଦେଉଳ ପାଖରେ ପହଞ୍ଚିଲା । ସେତେ-ବେଳକୁ ମାଙ୍କଡ଼ ଦେଉଳ ବେଢ଼ାରେ ଆରାମରେ ଶୋଇଥିଲା । ବାଘ ଏକା ଡ଼ିଆଁକେ ବୁଢ଼ା ମାଙ୍କଡ଼ର ଛାତି ଉପରେ ମାଡ଼ି ବସି ତା ବେକ କଣା କରି ରକ୍ତ ପିଇଲା ।

ବିଲୁଆ ଖଣ୍ଡେ ଦୂରରେ ଠିଆ ହୋଇ ଏ ଦୃଶ୍ୟ ଦେଖୁଥିଲା । ତା ପାଟିରୁ ବାହାରିଗଲା—ସମସ୍ତଙ୍କୁ ସବୁଦିନ ଠକି ହେବନାହିଁ । ଠକାମି ଦିନେ ନା ଦିନେ ଧରା ପଡ଼ିବ । ଠକମାନଙ୍କୁ ଏମିତି କଠିନ ଦଣ୍ଡ ଭୋଗିବାକୁ ପଡ଼ିଥାଏ ।



# ପଶୁମାନଙ୍କ ବିଚାର

ଗୋଟିଏ କୁକୁରର ୪ଟି ଛୁଆ । ଦିନେସେମାନେ କାନ୍ଦି କାନ୍ଦି ଆସି ତାଙ୍କ ମାଆକୁ କହିଲେ – ମାଆଲୋ, ଆମକୁ ମଣିଷ ପିଲ୍ମାନେ ପିଟୁଛନ୍ତି, ଟେକା ମାରୁଛନ୍ତି ଆଉ କାନକୁ, ବେକକୁ ଧରି ଟେକି ନେଇ କଚାଡ଼ି ଦେଉଛନ୍ତି ।

କୁକୁର ତା ପିଲ୍ମାନଙ୍କୁ କୋଳରେ ପୂରାଇ ଆଉଁସି ଦେଲା । ଖଣ୍ଡିଆ ହୋଇଥିବା ଜାଗାମାନଙ୍କୁ ଉପରେ ଦୃଷ୍ଟି ପକାଇଲା । ସେମାନଙ୍କୁ ବୁଝାଇ କହିଲା— ମଣିଷ ପିଲାମାନେ ବଡ଼ ଦୁଷ୍ଟ । ସେମାନେ ପଶୁଛୁଆଙ୍କ ସାଙ୍ଗରେ ଖେଳନ୍ତି । ଖେଳିଲାବେଳେ ପଶୁ ଛୁଆମାନଙ୍କୁ ପିଟନ୍ତି, ବାଡ଼ିରେ ଖେଞ୍ଚନ୍ତି, ଟେକା ମାରନ୍ତି ଆଉ ତାଙ୍କୁ ଟେକି କଚାଡ଼ନ୍ତି । ସେମାନଙ୍କୁ ଯେ ଏହାଦ୍ୱାରା କେତେ କଷ୍ଟ ହୁଏ, ମଣିଷ ପିଲାମାନେ ସେ କଥା ଜମା ଭାବନ୍ତି ନାହିଁ । ମଣିଷ ପିଲାଙ୍କ ମନ ଖୁସି ଖେଳ ତମ ପାଇଁ କାଳ । ମଣିଷ ପିଲାମାନଙ୍କୁ ଏକଥା କିଏ କହିବ ? କହିଲେ ବି ସେ କଣ ବୁଝିବେ ? ସେମାନଙ୍କୁ ଯଦି ଆଉ କିଏ ସେମିତି ପିଟା, ପିଟି, ଖେଞ୍ଚା, ଖେଞ୍ଚି, କଚଡା, କଚଡ଼ି କରନ୍ତା, ତେବେ ସେମାନେ ବୁଝନ୍ତେ । ହଉ, ତୁମେ ଏଥର ପଦାକୁ ନ ବାହାରି ଏହି ପାଳଗଦା ତଳେ ଲୁଚି କରି ରୁହ । ବଡ଼ ହେଲେ ବାହାରକୁ ବାହାରିବ ।

ସେଇଦିନୁ କୁକୁର ଛୁଆମାନେ ସେଇ ପାଳଗଦା ତଳେ ଛପି କରି

ରହିଲେ । କିଛି ଦିନ ପରେ ପୁଣି ସେମାନେ ତାଙ୍କ ମାଆକୁ କହିଲେ--ମାଅ ଲୋ ଆମେ ଏ ଅନ୍ଧାରଆ ପାଲଗଡ଼ା ତଳେ ରହି ରହି ମୁଣ୍ଡ ବୁଲେଇ ଦେଲାଣି । ଆମେ କିଛି ଜାଣିପାରୁ ନାହୁଁ କି ଦେଖି ପାରୁ ନାହୁଁ । ତୁ ସବୁଆଡ଼େ ବୁଲୁଛୁ । ଆମକୁ ଗୋଟେ ଗପ କହ, ଆମେ ଶୁଣିବୁ ।

କୁକୁର ବଡ଼ ଅଡ଼ୁଆରେ ପଡ଼ିଲା । ସିଏ କା କି ଗପ କହିବ ? ପିଲାମାନଙ୍କୁ କହିଲା – ତୁମେ ଥାଅ, ମୁଁ ଯାଉଛି । ଗୋଟିଏ ଗପ ବହି ଜାହା ଘରୁ ଆଣିବ । ତୁମେ ପଢ଼ି ନ ପାରିଲେବି ଚିତ୍ର ଦେଖି ସବୁ ବୁଝି ପାରିବ ।

କୁକୁର ପିଲାମାନଙ୍କୁ ବୁଝାଇ ସୁଝାଇ ଗପ ବହି ଆଣିବାକୁ ବାହାରିଲା । ସେ ପ୍ରଥମେ ଯାଇ ଜଣେ ଧନୀଲୋକ ଘରେ ପହଞ୍ଚିଲା । ତାଙ୍କ ଘର ଆଗରେ ଗୋଟିଏ ମଟରଗାଡ଼ି ଥୁଆ ହୋଇଥାଏ । ସେ ଭାବିଲା ଏଇ ଘରେ ନିଶ୍ଚୟ ଗପ ବହି ଥିବ । ସେଇ ଘରେ ପଶି ଲୁଚି ଲୁଚି ସବୁ ବଖରା ଖୋଜି ଆସିଲା, ଖଣ୍ଡିଏ ହେଲେ ବହି ପାଇଲା ନାହିଁ । ସେ ଯେଉଁଆଡ଼େ ଚାହିଁଲା, ଖାଲି ଲୁଗାପଟା ଆଉ ଜିନିଷପତ୍ର । ବହି ବୋଲି ଖଣ୍ଡିଏ ଦେଖିଲା ନାହିଁ । ସେଠାରୁ ନିରାଶ ହୋଇ ଫେରିଯାଇ କୁକୁରଟି ଆଉ ଜଣଙ୍କ ଘରେ ପହଞ୍ଚିଲା । ତାଙ୍କ ଘରେ ଅନେକ ବହି ଥିଲା କିନ୍ତୁ ପିଲାଙ୍କ ପାଇଁ କିଛି ବହି ନଥିଲା । ସେଠାରୁ ଯାଇ ଆଉ ଜଣଙ୍କ ଘରେ ପହଞ୍ଚିଲା । ସେଠି ଦେଖିଲା, ଚିତ୍ର ବିଚିତ୍ର ହୋଇଥିବା ଅନେକ ବହି । ସେଇ ବହିରୁ ଗୋଟିଏ ପାଟିରେ କାମୁଡ଼ି ଧରି ତା' ପିଲାମାନଙ୍କ ପାଖକୁ ଧାଇଁଲା । ପିଲାମାନେ ବହି ଦେଖି ଭାରି ଖୁସି ହୋଇଗଲେ । ସମସ୍ତେ ଗୋଟିଏ ବହିକି ଘେରିଗଲେ । କୁକୁର ବୁଝାଇଲା—କଳି କଜିଆ କରନାହିଁ । ବହି ଚିରିଯିବ । ଜଣେ ବହି ଧରୁ, ସମସ୍ତେ ଚିତ୍ର ଦେଖ ।



କୁକୁର ଛୁଆମାନେ ବହିରୁ ଚିତ୍ର ଦେଖି ଭାରି ଖୁସି ହେଲେ । ମାଆକୁ କହିଲେ—ମାଆ, ଆମକୁ ତୁ ବହିରୁ ପଢ଼ି ଗପଗୀତ ଶୁଣାଇ ଦେ । ଖାଲି ଚିତ୍ର ଦେଖିଲେ ସବୁ କଥା ବୁଝି ହେଉ ନାହିଁ ।

କୁକୁର କହିଲା—ମୁଁ କଣ ମଣିଷମାନଙ୍କର ଏ ବହି ପଢି ପାରିବ ? ଆମ ପଶୁମାନଙ୍କ ପାଇଁ ଅକ୍ଷର ନାହିଁ କି ବହି ନାହିଁ ।

କୁକୁର ଛୁଆମାନେ ପୁଣି ପଚାରିଲେ—ଆମର ବହି କାହିଁକି ନାହିଁ ।

କୁକୁର କହିଲା—ଆମ ପଶୁ ରାଇଜର ସମସ୍ତେ କହିବା ପାଇଁ ଗୋଟିଏ ସାଧାରଣ ଭାଷା ନାହିଁ । ଆମେ ଲେଖିବା ପାଇଁ କୌଣସି ଅକ୍ଷର ନାହିଁ କି ଆମେ ପଢ଼ିବା ପାଇଁ କୌଣସି ସ୍କୁଲ ନାହିଁ । ଆଉ ବହି ଆସିବ କୁଆଡ଼ୁ ?

ପିଲାମାନେ ଏକ ସ୍ୱରରେ କହିଲେ—ମାଆ ଏସବୁ କ'ଣ ଜମା ହୋଇ ପାରିବ ନାହିଁ ?

କୁକୁର ଟିକେ ଚିନ୍ତାକଲା । ତାପରେ କହିଲା—ତୁମେ ସବୁ ଭଲ କଥାଟିଏ କହିଛ । ଆମେ ଦିଗରେ କେହି ଚେଷ୍ଟା କର-

ନାହିଁ । ଗୋଟିଏ ପଶୁ ସଭା ବସେଇ ଏ କଥାଟା ବିଚାର କଲେ ହୁଏତ କିଛି କରିହବ । ତୁମେ ବ୍ୟସ୍ତ ହୁଅନା ମୁଁ ଅନ୍ୟ ପଶୁ ଭାଇମାନଙ୍କୁ ଏକଥା କହି ଗୋଟିଏ ସଭା ଡ଼ାକିବାର ବ୍ୟବସ୍ଥା କରୁଛି ।

ସାତକୁ ସାତ ଚାରିଦିନ ପରେ ସବୁ ପଶୁମାନଙ୍କର ଗୋଟିଏ ବିରାଟ ସଭା ହେଲା । ସେଥିରେ ବାଘ, ଭାଲୁ, ହାତୀ, ବିଲୁଆ, ମାଙ୍କଡ଼ ବଣୁଆଁ ପଶୁ ଆଉ ଛେଳି, ମେଣ୍ଢା, ଘୋଡ଼ା, ଗଧ, କୁକୁର ଇତ୍ୟାଦି ସବୁ ଗାଉଁଲି ପଶୁ ଯୋଗ ଦେଲେ । ବଣଟା ପଶୁମାନଙ୍କ ପାଟି ଗୋଳରେ କମ୍ପି ଉଠୁଥାଏ । ବହୁ ବାଦ ବିବାଦ ପରେ ବାଘ ସଭାପତି ହୁଅନ୍ତୁ ବୋଲି ବିଲୁଆ ପ୍ରସ୍ତାବ ଦେଲା । ସେ ପ୍ରସ୍ତାବକୁ କରତାଳି ଦେଇ ସମସ୍ତେ ସମର୍ଥନ କଲେ । ସଭାକାର୍ଯ୍ୟ ଆରମ୍ଭ





ହେଲା । ସଭାର ଉଦ୍ଦେଶ୍ୟ ବୁଝାଇବା ପାଇଁ କୁକୁର ଠିଆ ହୋଇ କହିଲା--

ସଭାପତି ମହାଶୟ, ଓ ମୋର ଭାଇ ଭଉଣୀମାନେ ! ଆପଣମାନେ ସମସ୍ତେ ଜାଣନ୍ତି, ମଣିଷ ପ୍ରଥମେ ଆମପରି ଜଙ୍ଗଲରେ ରହି ଝରଣାର ପାଣି ପିଇ ବଣର ଫଳମୂଳ ଖାଇ ଚଳୁଥିଲା । ଖରା ବର୍ଷାରୁ ରକ୍ଷାପାଇବା ପାଇଁ ପାହାଡ଼ ଗୁମ୍ଫାରେ ରହୁଥିଲା । ସେତେବେଳେ ତାର କୌଣସି ଭାଷା ନଥିଲା । ସେ ଲେଖି ଜାଣି ନଥିଲା କି ଆଜିପରି ତାର ବହିପତ୍ର ନଥିଲା । ମୋଟ ଉପରେ ପ୍ରଥମେ ମଣିଷ ଠିକ୍ ଆମରି ପରି ଚଳୁଥିଲା । ଆସ୍ତେ ଆସ୍ତେ ସିଏ କୃଷିବାସ କରି ଶିଖିଲା, ଘର କରି ଶିଖିଲା । ତାପରେ ବଣ ଛାଡ଼ି ଗାଁରେ ରହିଲା । ପରସ୍ପର ଭିତରେ କଥାବାର୍ତ୍ତା କରିବା ପାଇଁ ଭାଷା ତିଆରି କଲା, ଅକ୍ଷର ତିଆରି କଲା । ତାପରେ ଗୋଟିଏ ପରେ ଗୋଟିଏ ନୂଆ ନୂଆ ଜିନିଷ ବାହାର କଲା । ବର୍ତ୍ତମାନ ମଣିଷ କ'ଣ ନ କରୁଛି ? ପାଣିରେ ମାଛ ପରି ବୁଡ଼ି ପାରୁଛି, ଆକାଶରେ ଚଢ଼େଇଠାରୁ ଅଧିକ ବେଗରେ ଉଡ଼ି ପାରୁଛି ଗାଡ଼ି ମଟର କରି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଅତି ଅଳ୍ପ ସମୟରେ ଯାଇ ପାରୁଛି । ଟେଲିଫୋନ, ରେଡ଼ିଓ, ଟେଲିଭିଜନ ଆଦି ଅନେକ ଜିନିଷ କରି ପାରିଛି । ଏସବୁ ଉନ୍ନତିର ମୂଳରେ କେବଳ ଗୋଟିଏ କଥା । ସେଇଟା ହେଉଛି ପାଠ । ଆମେ ଚେଷ୍ଟା କଲେ କଣ ପାଠ ପଢ଼ି ପାରିବା ନାହିଁ ? ମଣିଷ ନିଜ ଚେଷ୍ଟା ବଳରେ ଆମରି ଅବସ୍ଥାରୁ ଉଠି ଆଜି କେତେ ଉପରକୁ ନ ଯାଇଛି ? ଆମେ ଯଦି ଚେଷ୍ଟା କରନ୍ତେ ଆମେ ପାଠ ପଢ଼ି ନ ପାରନ୍ତେ କାହିଁକି ? ଚେଷ୍ଟାର ଅସାଧ୍ୟ କ'ଣ ଏ ଦୁନିଆରେ ଅଛି ? ଯେତେଦିନ ପର୍ଯ୍ୟନ୍ତ ଆମେ ପାଠ ନ ପଢ଼ିଛେ, ସେତେଦିନ ପର୍ଯ୍ୟନ୍ତ ଆମ ପଶୁ ସମାଜର ଉନ୍ନତି ନାହିଁ । ମୁଁ ଏ ସଭାକୁ ଏତିକି ପଚାରୁଛି, ଆମେ ଚେଷ୍ଟା କଲେ କ'ଣ ଆମ ପାଠ ପଢ଼ାର ବ୍ୟବସ୍ଥା କରି ପାରିବା ନାହିଁ ?

ଏତିକି କହି କୁକୁର ବସି ପଡ଼ିଲା । ସଭାରେ ଫୁସ୍ ଫାସ୍ ଟୁପ୍ ଟାପ୍

ଶୁଣାଗଲା । ଭାଲୁଅ ସଭାପତିଙ୍କର ଅନୁମତି ନେଇ କହିବାକୁ ଠିଆ ହେଲା । ସେ କହିଲା—ସଭାପତି ମହାଶୟ ଓ ମୋର ପ୍ରିୟ ଭାଇ ଓ ଭଉଣୀମାନେ ! କୁକୁର ଯାହା କହିଲା ଆପଣମାନେ ଶୁଣିଲେ । ମଣିଷ ଦିନେ ଆମରି ପରି କିଛି ଜାଣି ନଥିଲା । ଆମର ଅବସ୍ଥାରେ ଥିବା ମଣିଷ ଯଦି ଏତେ ଏତେ କାମ କରି ପାରିଲା ଆମେ ନ କରି ପାରିବା କାହିଁକି ? (ସମସ୍ତେ ନିଶ୍ଚୟ କହି କରତାଳି ଦେଲେ ।) ପ୍ରଥମେ ଆମେ ଆମର ଭାଷା କଥା ଚିନ୍ତା କରିବା ଓ ଏଥିପାଇଁ ଅକ୍ଷର ତିଆରି କରିବା । ତା ପରେ ବହି ତିଆରି ହେବ । ତା ପରେ ସ୍କୁଲ ଖୋଲି ସବୁ ପଶୁଙ୍କୁ ପାଠ ପଢ଼ାଇବାକୁ ହେବ ।

ତାପରେ ମାଙ୍କଡ଼ କହିଲା—ଭାଇମାନେ ଏଇଟା କିଛି ଅସୁବିଧା କି ଅସମ୍ଭବ କଥା ନୁହଁ । ଆମେ ମଣିଷର ବଂଶଧର । ମଣିଷ ପରି ଆମେ ସବୁ କରିପାରିବୁ । ଆମେ ସର୍କସରେ କେତେ ଖେଳ ଦେଖାଉ ଆପଣମାନେ ଦେଖିଥିବେ । ଆମେ ସର୍କସରେ ଅଙ୍କ କଷୁ, ସାଇକେଲ ଚଲାଉ ଆଉ ନାଚ କରୁ । କୁକୁର ଗାଡ଼ି ଟାଣେ, ଭାଲୁ ମଟର ଚଲାଏ, ହାତୀ ଫୁଟବଲ ଖେଳେ । ତେଣୁ ଆମେ ଚେଷ୍ଟା କଲେ ମଣିଷ ପରି ସବୁ କରି ପାରିବା । (ସମସ୍ତେ ଖୁସି ହୋଇ ତାଳି ମାରିଲେ)

ମାଙ୍କଡ଼ ତାର ଭାଷଣ ଶେଷ କରି ବସି ପଡ଼ିଲା । ତାପରେ ସବୁ ପଶୁ ଗୋଟି ଗୋଟି ହୋଇ ଠିଆ ହୋଇ ସେମାନଙ୍କ ମତ ଦେଲେ । ଶେଷରେ ସଭାପତି ବାଘ ଠିଆ ହୋଇ କହିଲା—ଭାଇ ଓ ଭଉଣୀମାନେ ଆମେ ସମସ୍ତେ ଏକମତ ଯେ ଆମେ ଆମର ଉନ୍ନତି ପାଇଁ ଚେଷ୍ଟା କରିବା । ପ୍ରଥମ କଥା ହେଲା ଆମେ କେମିତି ପାଠ ପଢ଼ିବା । ଆମେ ପାଠ ପଢ଼ିପାରିଲେ ଆମ ଉନ୍ନତିର ବାଟ ଖୋଲିଯିବ । ଆମେ ପାଠ ପଢ଼ିଲେ ମଣିଷ ପରି ମଟର,

ଉଡାଜାହାଜ, ରେଲଗାଡ଼ି, ଟେଲିଭିଜନ ଓ ଟେଲିଫୋନ ଇତ୍ୟାଦି ନୂଆ ନୂଆ ଜିନିଷ ତିଆରି କରିବା । ନାନା ପ୍ରକାର ହାତ ହତିଆର ତିଆରି କରି ମଣିଷର ଶାସନ, ତାର ଅତ୍ୟାଚାର ବିରୁଦ୍ଧରେ ଲଢ଼ିବା । କିନ୍ତୁ ଏମିତି ସଭାରେ କିଛି କରିହେବନାହିଁ । ତେଣୁ ମୁଁ ପ୍ରସ୍ତାବ ଦେଉଛି-ବିଲୁଆ, ମାଙ୍କଡ଼ ଓ ଠେକୁଆଙ୍କୁ ନେଇ ଗୋଟିଏ ତିନି ଜଣିଆ କମିଟି ଗଢ଼ାଯାଉ । ସେମାନେ ପ୍ରତିଦିନ କିଛି ସମୟ ଏକାଠି ବସି ଉପାୟ ଚିନ୍ତା କରନ୍ତୁ । କଣ କଲେ ଆମର ଉନ୍ନତି ହେବ, ଆମର ଗୋଟିଏ ନୂଆ ଭାଷା କେମିତି ବାହାରି ପାରିବ, ବହି ଲେଖିବା ପାଇଁ ଆମର ଅକ୍ଷର କଣ ହେବ, ଏସବୁ ବିଷୟ ସେମାନେ ଚିନ୍ତା କରନ୍ତୁ । ପ୍ରତି ମାସରେ ଏଇଦିନ ଏଇଠି ଆମର ସଭା ହେବ । କମିଟି ଦେଉଥିବା ପ୍ରସ୍ତାବ ଉପରେ ଆଲୋଚନା କରାଯାଇ କୌଣସି ନିଷ୍ପତ୍ତି ନିଆଯିବ ।

ସମସ୍ତଙ୍କ ମନକୁ କଥାଟା ପାଇଲା । ସମସ୍ତେ କରତାଳି ଦେଇ ତାଙ୍କର କଥାକୁ ସମର୍ଥନ କଲେ । ସଭା ଭାଙ୍ଗିଲା । ସମସ୍ତେ ମନ ଖୁସିରେ ନିଜ ନିଜର ଘରକୁ ଫେରିଗଲେ । କୁକୁର ଆସି ତା ପିଲାମାନଙ୍କୁ ଏସବୁ କଥା କହିଲା । ପିଲାମାନେ ମନ ଖୁସିରେ ଡେଇଁ ଡେଇଁ ନାଚିଲେ ।

ଯିଏ ଯେଉଁ ଅବସ୍ଥାରେ ଥାଉନା କାହିଁକି ନିଜ ସମାଜର, ଦେଶର ଉନ୍ନତି କରିବାକୁ ଚିନ୍ତା କରିବା ଉଚିତ । ବର୍ତ୍ତମାନ ଯେତିକି ସୁବିଧା ଓ ସୁଯୋଗ ମିଳୁଛି ତାହା ଯଥେଷ୍ଟ, ତାଠାରୁ ଅଧିକ କିଛି କରିବାକୁ ଆଉ ନାହିଁ ଏକଥା ଭାବିବା ଉଚିତ ନୁହେଁ । ତୁମେ ଅଧିକ କିଛି କରିପାର ଅବା ନପାର କିନ୍ତୁ ଦେଶର ଉନ୍ନତିକର କାମ କରିବାର ଚିନ୍ତା ତୁମ ମନରେ ଉଙ୍କିଦେଲେ ହେବା ଉଚିତ । କିଏ କହିବ ଭବିଷ୍ୟତରେ ତୁମେ ଦେଶକୁ, ଏ ସମାଜକୁ କ'ଣ ଦାନ କରିବ ?



# ମାଙ୍କଡ଼ାମାର ଫନ୍ଦ

ଖରାଦିନ । ଗଛ ପତ୍ର ଜଳି ଯାଉଛି, ଭୂଇଁ ଫାଟି ଆଁ କରୁଛି । କୋଉଠି ହେଲେ ପାଣି ନାହିଁ । କିନ୍ତୁ ବଣ ମଝିରେ ଗୋଟିଏ ଛୋଟ ଗଡ଼ିଆ । ଗଡ଼ିଆଟି ଛୋଟ ହେଲେ କଣ ହେବ ସେଥିରୁ ପାଣି ଶୁଖିବା କେହି ଦେଖି ନାହାନ୍ତି । ସେ ଗଡ଼ିଆରେ ପାଣି ଯେତିକ ପଙ୍କ ସେତିକି । ସେ ଗଡ଼ିଆ ଭିତରକୁ ପଶିବାକୁ କୌଣସି ପଶୁ ସାହସ କରନ୍ତି ନାହିଁ । ଶୁଣିବାକୁ ମିଳେ ଥରେ କୁଆଡ଼େ ହାତୀଟିଏ ଗଡ଼ିଆ ଭିତରେ ସାହସ କରି ପଶି ଯାଇଥିଲା । କିନ୍ତୁ ସେ ହାତୀଟି ଗଡ଼ିଆ ଭିତରେ ପଙ୍କ ଆଉ ପାଣିରେ ବୁଡ଼ିଗଲା । କେବଳ ତାର ଥୋଡ ହସ୍ତ ଛଡ଼ା, ଆଉ କିଛି ଦେଖାଗଲା ନାହିଁ । ବଣର ସବୁ ପଶୁ ଯେତେ ଚେଷ୍ଟା କଲେ ହାତୀଟିକୁ ଆଉ ରକ୍ଷା କରି ପାରିଲେ ନାହିଁ । ସେଇଦିନରୁ ସେ ଗଡ଼ିଆରେ ଆଉ କୌଣସି ପଶୁ ପଶିବାକୁ ସାହାସ କରେ ନାହିଁ ।

ଏ ମୁଣ୍ଡଫଟା ଖରାରେ ବି ସେ ଗାଡ଼ିଆରେ ଅନେକ ପାଣି । ବଣଯାକର ପଶୁ ସେଇ ଗାଡ଼ିଆ ପାଣି ପିଅନ୍ତି । ଗଡ଼ିଆଟି ପଶୁମାନଙ୍କର ଗୋଟିଏ ସମ୍ପଦ ।

ଦିନେ ସେଇ ଗଡ଼ିଆ କୂଳରେ ଥିବା ଗୋଟିଏ ବଡ଼ ଗଛ ଡାଳରେ ଜଣେ ଶିକାରୀ ଗୋଟିଏ ମଞ୍ଚା ତିଆରି କରି ପଶୁ ଶିକାର କରିବାକୁ ଜଗି ବସି ରହିଲା । ଦିନ ଯାଇ ରାତି ହେଲା, ତାପରେ ରାତି ବି ପାହିଲା । କିନ୍ତୁ ଗୋଟିଏ ହେଲେ



ପଶୁ ପାଣି ପିଇବାକୁ ଆସିଲେ ନାହିଁ । ଶିକାରୀଟି ମନେ ମନେ ବିରକ୍ତ ହେଲା । ଏଡ଼େ ସୁନ୍ଦର ଖଦାକୁ ବି କନ୍ତୁ ଗଡ଼ି ନ ଥିବାରୁ ନିଜ ଭାଗ୍ୟକୁ ଦୋଷ ଦେଲା ।

କିନ୍ତୁ ପ୍ରକୃତ କଥାଟା ହେଲା—ଶିକାରୀ ଆସିବା, ଗଡ଼ିଆ କୂଳ ଗଛରେ ମଞ୍ଚା ତିଆରି କରି ହାତରେ ବନ୍ଧୁକ ଧରି ବସି ରହିବା, ଏସବୁ ବିଲୁଆ ଦେଖିଥିଲା । ସେ ବଣର ସବୁ ପଶୁମାନଙ୍କୁ ସାବଧାନ କରାଇ କହିଲା— ଭାଇମାନେ, ଗଡ଼ିଆ କୂଳରେ ଶିକାରୀ ଜଗିଛି । କେହି ପାଣି ପିଇବାକୁ ଯିବ ନାହିଁ । ହୁସିଆର ଯିଏ ଯିବ ସିଏ ନିଶ୍ଚୟ ଶିକାରୀ ଗୁଳିରେ ମରିବ ।

ବିଲୁଆର ଏ କଥା ଶୁଣି କୌଣସି ପଶୁ ଗଡ଼ିଆ ପାଖକୁ ଗଲେ ନାହିଁ । ଶିକାରୀ ରାତିସାରା ଅନିଦ୍ରା ରହି ଦିନରେ ମଞ୍ଚା ଉପରେ ଶୋଇ ପଡ଼ିଲା । ତା ପାଖରେ ବନ୍ଧୁକଟି ଥୁଆ ହୋଇଥାଏ ।

ବିଲୁଆ ବଣର ସବୁ ପଶୁମାନଙ୍କଠାରୁ ଚତୁର ଓ ବୁଦ୍ଧିମାନ ବୋଲି ତାର ବଣରେ ଯେମିତି ସୁନାମ ଅଛି ସିଏ ସେମିତି ଠକ ଅଉ ଟାଉଟର ବୋଲି ସବୁ

ପଶୁ ଜାଣନ୍ତି । ତେଣୁ ତା କଥାକୁ ସହଜରେ କେହି ବିଶ୍ୱାସ କରନ୍ତି ନାହିଁ । ପ୍ରଥମ ଦିନ ବିଲୁଆ କଥାକୁ ବିଶ୍ୱାସ କରି କେହି ଗଡ଼ିଆ ପାଖକୁ ଆସିଲେ ନାହିଁ । କିନ୍ତୁ ଦ୍ୱିତୀୟ ଦିନ ପଶୁମାନେ ବସି ବିଚାର କଲେ, ଏ ବିଲୁଅ କଥାକୁ ବିଶ୍ୱାସ କରି ଶୋଷରେ ଛଟପଟ ହୋଇ ମରିବା ଠିକ୍ ହେବ ନାହିଁ । ଭାଲୁ କହିଲା—ଭାଇମାନେ ! ବିଲୁଆକୁ ମୋର ବିଶ୍ୱାସ ପାଉ ନାହିଁ । ମୋର ସନ୍ଦେହ ହେଉଛି, ସ୍ୱାର୍ଥରେ ବିଲୁଅର କିଛି କାରସାଦି ଅଛି । ବିଲୁଆ ବୋଧେ ସେ ଗଡ଼ିଆର ପାଣିକୁ ଆମ ପଡ଼ଶା ବଣର ପଶୁମାନଙ୍କୁ ବିକି ଦେଉଛି । ଆମେ ଯଦି ସେ ଗଡ଼ିଆକୁ ନ ଯିବା ତେବେ ସବୁ ପାଣି ବିଲୁଆ ବିକି ଦେବ ।

କିଏ କେତେ ପ୍ରକାର କହିଲା । ଶେଷରେ ଠିକ୍ ହେଲା ସେମାନଙ୍କ ଭିତରୁ ଜଣେ ଗଡ଼ିଆ ପାଖକୁ ଯାଇ ପ୍ରକୃତ ଘଟଣାଟା କ'ଣ ବୁଝି ଆସିଲେ ତାପରେ ଯାହା କରାଯିବ । କିନ୍ତୁ ମରଣ ମୁହଁକୁ କିଏ ଯିବ ? କାହାରବା ଜୀବନ ପ୍ରତି ଲୋଭ ନାହିଁ ? ଇଏ ତା ମୁହଁକୁ ଚାହିଁା ଚାହିଁ ହେଲେ । ସମସ୍ତଙ୍କ ଆଖି ଯାଇ ଶେଷରେ ବାଘ ପାଖରେ ଠୁଳ ହେଲା । ସମସ୍ତେ ବାଘ ଆଡ଼କୁ ଅନାଇଁ ରହିଲେ ।

ବାଘ କହିଲା— ଭାଇମାନେ ! ମୁଁ ଯିବାରେ ମୋର ଆପତ୍ତି ନାହିଁ । କିନ୍ତୁ ଯଦି ସେଠାରେ ପ୍ରକୃତରେ ଶିକାରୀ ଥାଏ ତେବେ ସିଏ ନିଶ୍ଚୟ ମୋତେ ଶିକାର କରିବ । ମୁଁ ମରିଗଲେ ତୁମର ସାହାସ, ବଳ ସବୁ ତୁଟିଯିବ । ଶିକାରୀର ଆଉ କାହାକୁ ଭୟ ରହିବ ନାହିଁ । ତେଣୁ ସେ ଆଉ ଗଡ଼ିଆ କୂଳରେ ଲୁଚି କରି ନ ବସି ବଣରେ ପଶି ତୁମକୁ ସବୁ ଖୋଜ ଖୋଜ ଶିକାର କରିବ । ମୁଁ ବଣରେ ଅଛି ବୋଲି ସେ ମୋ ଭୟରେ ପଶୁ ନାହିଁ ।

କଥାଟା ସମସ୍ତଙ୍କ ମନକୁ ଗଲା । ପୁଣି ଚାଲିଲା ଫସ୍ ଫାସ୍ । ଇଏ କହିଲା ତୁ ଯାଆ, ସିଏ କହିଲା ତୁ ଯାଆ । ଏମିତ ଅନେକ ସମୟ ଚାଲିଲା ପରେ ହଠାତ ମାଙ୍କଡ଼ ଠିଆହୋଇ କହିଲା - ମୁଁ ଯିବି ।

ମାଙ୍କଡ଼ ପଶୁମାନଙ୍କ ମଙ୍ଗଳ ପାଇଁ ନିଜ ଜୀବନକୁ ପାଣି ଛଡ଼ାଇ ଗଡ଼ିଆ ପାଖକୁ ଯିବାକୁ ବାହାରିବାରୁ ସମସ୍ତେ ତାକୁ ଧନ୍ୟ ଧନ୍ୟ କଲେ ।

ମାଙ୍କଡ଼ ଚାରି ଆଡ଼କୁ ଚାହିଁ ଚାହିଁ ଏ ଗଛରୁ ସେ ଗଛକୁ ଡେ଼ଇଁ ଡେ଼ଇଁ ଗଡ଼ିଆ ଆଡକୁ ଆସିଲା । ଆଉ ଗଡ଼ିଆ ଖୁବ ଅଳ୍ପ ବାଟ ଥାଏ, ଚାରି ଆଡକୁ କନ୍ କନ୍ ହୋଇ ଚାହିଁଲା । ଗଡ଼ିଆ ଦେଖା ଯାଉଛି । ଗଡ଼ିଆ କୂଳରେ କେହି ନାହିଁ । ଗଡ଼ିଆ କୂଳର ଗଛମାନଙ୍କୁ ଚାହିଁଲା । କେଉଁଠି ହେଲେ ଶିକାରୀକୁ ଦେଖି ପାରିଲା ନାହିଁ । ମନେ ମନେ ଭାବିଲା ଏ ପଶୁଗୁଡାକ କେଡ଼େ ବୋକା ସତେ ! ଛାର ଶଲୁଆ ଏମାନଙ୍କୁ ଡ଼ରେଇ ଦେଉଛି । ସେଇ ଭୟରେ ସମସ୍ତେ ଛାନିଆଁ । ପାଣି ନ ପଇ ଶୋଷରେ ଛଟପଟ ହେଉଛନ୍ତି । ମାଙ୍କଡ଼ ଆସ୍ତେ ଆସ୍ତେ ଗଡ଼ିଆ କୂଳକୁ ଗଲା । ମନ ଇଚ୍ଛା ପେଟେ ପାଣି ପିଇଲା । ଗଡିଆ କୂଳରେ ବସି ଚାରି ଆଡ଼କୁ ଚାହିଁଲା, କେହି ନାହିଁ । ତା ମନରୁ ଭୟ ସମ୍ପୂର୍ଣ୍ଣ ଦୂର ହୋଇଗଲା ।

ମାଙ୍କଡ଼ ବଣ ଭିତରକୁ ଫେରିବାକୁ ବସିଛି, ଏତିକିବେଳେ ଚାହିଁଲା ଗଡ଼ିଆର ଠିକ୍ ଉତ୍ତର ଦଗରେ ଗୋଟିଏ ବଡ଼ ଗଛ ଉପରେ ଗୋଟିଏ ମଞ୍ଚା ଦ' ହିଁଆରେ ମାଙ୍କଡ଼ ଯାଇ ମଞ୍ଚାରେ ପହଞ୍ଚିଲା । ଦେଖିଲା ଶିକାରୀଟି ନିଘୋଡ ନିଦରେ ଶୋଇଛି । ପ୍ରଥମେ ଭାବିଲା ଶିକାରୀକ ଗଛରୁ ଠେଲି ତଳକୁ ପକାଇ ଦେବ । ପୁଣି ଭାବିଲା, ନାଁ, ତଳେ ପଡ଼ି ସିଏ ଯଦ ନ ମରେ ତେବେ

ସବୁ ଅଡ଼ୁଆ ହୋଇଯିବ । ହଠାତ୍ ତା ଆଖିରେ ବନ୍ଧୁକଟି ପଡ଼ିଲା । ସେ କିଛି ନ ଭାବି ବନ୍ଧୁକଟିକୁ କାନ୍ଧରେ ପକାଇ ତଳକୁ ଓହ୍ଲାଇ ଆସିଲା ।

ଏଥର ମାଙ୍କଡ଼ ଗଡ଼ ଜିତିଲା ପରି ଗର୍ବରେ ଛାତି ଫୁଲେଇ ବଣ ଆଡ଼କୁ ଚାଲିଲା । ପୁଣି କଣ ଭାବି ଗୋଟିଏ ଉଚ୍ଚା ପଥର ଉପରେ ବସିଲା । ବନ୍ଧୁକର ଏମୁଣ୍ଡ ସେମୁଣ୍ଡ ଚାହିଁଲା । ଏପଟ ସେପଟ କରି ବନ୍ଧୁକଟିକୁ ପରୀକ୍ଷା କଲା । ସେ ମନେ ମନେ ଭାବିଲା—ଆରେ ମୁଁ କେଡ଼େ ମୂର୍ଖ ସତେ । ଏଇ ବନ୍ଧୁକଟି ଶିକାରୀ ହାତରେ ଥିଲା ବୋଲି ତାକୁ ବଣର ପଶୁମାନେ ଡ଼ରି ଛାନିଆଁ ହେଉଥିଲେ । ବର୍ତ୍ତମାନ ମୋ ହାତରେ ବନ୍ଧୁକ । ପଶୁମାନେ ମୋତେ ନ ଡ଼ରିବେ କାହିଁକି ? ଏଇ ବନ୍ଧୁକ ବଳରେ ମୁଁ ରାଜା ନ ହେବି କାହିଁକି ?



ବନ୍ଧୁକଟି କାନ୍ଧରେ ପକାଇ ରାଜା ପର ପାଦ ପକାଇ ପକାଇ ବଣ ଆଡ଼କୁ ମାଙ୍କଡଟି ଚାଲିଲା । କିଛି ବାଟ ଯାଇ ପୁଣି ଠିଆ ହୋଇଗଲା । ଭାବିଲା—ଆରେ ମୁଁ କେଡ଼େ ବୋକା ସତେ ! ଖାଲି ଏ ବନ୍ଧୁକଟାକୁ ମୋ ହାତରେ ଦେଖିଲେ କଣ ପଶୁମାନେ ମୋତେ ଡ଼ରିବେ । ମୁଁ ଯଦି ବନ୍ଧୁକ ଚଳେଇ ପାରିବି ନାହିଁ ସେମାନେ ମୋତେ ଡ଼ରିବେ । ମୁଁ ଆଗେ ଏଠି ବନ୍ଧୁକ ଚଳେଇ ଶିଖିବି, ତାପରେ ଯାଇ ସେମାନଙ୍କ ପାଖକୁ ଯିବି । ବନ୍ଧୁକ ଦେଖାଇ କମ୍ବା ଦରକାର ହେଲେ ବନ୍ଧୁକ ଫୁଟାଇ ପଶୁମାନଙ୍କୁ ଡ଼ରାଇ ମୁଁ ରାଜା ହେବି । ମୁଁ ଶାସନ କରିବି । ମୁଁ ବନ୍ଧୁକ ଚଳାଇବାରେ କିଛି ଅସୁବିଧା ହେବ ନାହିଁ । ମାଙ୍କଡ଼ ଆଉ ମଣିଷ ଭିତରେ କିଛି ତଫାତ୍ ନାହିଁ । ମଣିଷ ମୁଣ୍ଡରେ ଯୋଉ ମସଲା ମାଙ୍କଡ଼ ମୁଣ୍ଡରେ ସେଇ ମସଲା । କେବଳ ଆମ ଦେହରେ ବଡ଼ ବଡ଼ ଲୋମ ଆଉ ପଛରେ ଗୋଟିଏ ଲାଞ୍ଜ ଥିବାରୁ ଆମେ ଲାଜରେ ଗାଁ ଗଣ୍ଡା, ସହର ବଜାରକୁ ନ ଯାଇ ବଣ ଜଙ୍ଗଲରେ ରହୁଛୁ । ମଣିଷ ଗାଁ ଗଣ୍ଡାରେ ରାଜା ହୋଇଛି । ଆମେ ପ୍ରକୃତରେ ବଣରେ ରାଜା ହେବା କଥା । ଆଜି ମୋ ହାତରେ ସୁଯୋଗ ମିଳିଛି । ସୁଯୋଗ ଜୀବନରେ ଥରେ ଆସେ । ତାକୁ ହାତ ଛଡ଼ା କଲେ ଆଉ କେବେ ମିଳିବ ନାହିଁ । ମୁ ଏ ସୁଯୋଗ ଛାଡ଼ିବି ନାହିଁ ।

କେମିତି ବନ୍ଧୁକ ଧରିବାକୁ ହୁଏ ମାଙ୍କଡ ଜାଣି ନାହିଁ । ସେ ବନ୍ଧୁକଟାକୁ ଏପଟ ଧରି କିଛି ସମୟ, ଚପା, ଚପି, କାମୁଡ଼ା, କାମୁଡ଼ି କଲା । ପୁଣି ସେପଟ ଧରି ସେମିତି କଲା । ଏମିତି କିଛି ସମୟ କଟିଗଲା । ବନ୍ଧୁକ କେମିତି ଧରିବାକୁ କି କେମିତି ଫୁଟାଇବାକୁ ହୁଏ ସେ ଜାଣି ପାରିଲା ନାହିଁ । ତଥାପି ସେ

ବନ୍ଧୁକଟାକୁ ଧରି କାମୁଡ଼ା କାମୁଡ଼ି କରୁଥାଏ । ହଠାତ୍ ବନ୍ଧୁକଟା 'ଢୋ' କରି ଫୁଟିଲା । ବନ୍ଧୁକ ଓ ମାଙ୍କଡ଼ ଦୁହେଁ ଛିଟିଆଡ଼ି ହୋଇ ପଡ଼ିଲେ । ମାଙ୍କଡ଼ ଛାତିରେ ଗୁଳି ଫୁଟି ତା ଛାତିରୁ ରକ୍ତର ଧାର ଛୁଟିଥାଏ । ସଙ୍ଗେ ସଙ୍ଗେ ମାଙ୍କଡ଼ଟି ମରିଗଲା । ଗୁଳି ଶବ୍ଦରେ ସାରା ବଣ କମ୍ପିଗଲା । ଶିକାରୀ ନିଦରୁ ଉଠି ପଡ଼ିଲା । ଦେଖିଲା ତା ପାଖରେ ବନ୍ଧୁକ ନାହିଁ । ଗଛରୁ ଓହ୍ଲାଇ ଏଣେ ତେଣେ ବନ୍ଧୁକଟିକୁ ଖୋଜିଲା । ବଣର ପଶୁମାନେ ଗୁଳି ଶବ୍ଦ ଶୁଣି ଭାବିଲେ ଶିକାରୀ ଗୁଳିରେ ମାଙ୍କଡ଼ର ପ୍ରାଣ ଗଲା ।

କୌଣସି ଜିନିଷର ବ୍ୟବହାର ନ ଜାଣି ତାକୁ ମୋଡ଼ା ମୋଡ଼ି କଲେ ମାଙ୍କଡର ଦଶା ଭୋଗିବାକୁ ହୁଏ ।



# ଗଧର ନାଚ ଗୀତ

ନଣପୁର ଗାଁ ପାଖ ପଡ଼ିଆରେ ଦିନେ ଗୋଟିଏ ଗଧ ଚରୁଥିଲା । ବୁଦା ମୂଳରୁ ଗୋଟିଏ ବିଲୁଆ ବାହାରି କହିଲା— ଗଧ ଦେଓ.ସା, ତୁମ ସ୍ୱର ଅତି ମଧୁର । ତୁମେ ଗୋଟିଏ ଗୀତ ଗାଅ । ମୋ ମନଟା ଭଲ ନାହିଁ । ତୁମ ଗୀତ ଶୁଣିଲେ ମୋ ମନ ଖୁସି ହେବ ।

ଗଧ ମୁହଁ ଟେକ ବିଲୁଆକୁ ଚାହିଁଲା । କାନ ଆଉ ଲାଞ୍ଜ ହଲାଇ ଫୁଲେଇ ହୋଇ କହିଲା—ଆରେ ବିଲୁ ! ମୋ ସ୍ୱର କଣ ସତେ ମଧୁର ? କାହିଁ ମୁଁ ତ ଜାଣି ପାରୁନାହିଁ । ତୁମେ ତେ ଥଟ୍ଟା କରୁ ନାହୁଁ ତ ?



ବିଲୁଆକୁ ଭାରି ହସ ଲାଗିଲା । ବହୁ କଷ୍ଟରେ ହସ ଚାପି ବିଲୁଆ କହିଲା ଗଧ ମଉସା, ସତରେ ତୁମେ ଗୋଟେ ଗଧ । ତୁମ ନିଜ ସ୍ୱର ଭଲ କି ମନ୍ଦ ତୁମେ କେମିତି ଜାଣିବ ? ଆମେ ତୁମ ସ୍ୱର ଶୁଣୁଛୁ । ଆମକୁ ତୁମ ସ୍ୱର ମଧୁର ଲାଗୁଛି ବୋଲି ମୁଁ କହିଲି । ସତରେ ମଉସା ତୁମ ସ୍ୱର ଠିକ୍ ଶଙ୍ଖର ସ୍ୱର ପରି ଭାରି ମଧୁର । ତୁମେ କଣ୍ଠରେ ମାଙ୍ଗଳିକ ସଙ୍ଗୀତ ଭାରି ସୁନ୍ଦର ଶୁଭିବ ।

ଗଧ ମନକୁ ବିଲୁଆ କଥାଟା ଏକାବେଳକେ ପାଇଗଲା । ସିଏ ଯେ ଏତେ ସୁନ୍ଦର ଗୀତ ଗାଇପାରେ ଏକଥା ଜାଣି ଗର୍ବରେ ଫୁଲି ଉଠିଲା । ମୁହଁକୁ ହଲାଇ, କାନକୁ ଠିଆ ଠିଆ କରି, ବଡ଼ ବଡ଼ ଆଖି କରି ବିଲୁଆକୁ କହିଲା— ଆରେ ବିଲୁଆ, ତୁ ବୁଝାବୁଝି କର, ମୁଁ ରେଡ଼ିଓରେ ଗୀତ ଗାଇବି ।

ବିଲୁଆ ବଡ଼ ପାଟି କରି ହସିଦେଲା । ହଠାତ୍ ହସ ବନ୍ଦ କରି କହିଲା—ହଁ ମଉସା, ତମେ ଏତେ ଦିନେ କଥା ପରି କଥା ପଦେ କହିଲ । ପ୍ରତିଦିନ ରେଡ଼ିଓରୁ ମଣିଷ କଣ୍ଠରୁ ଗୀତ ଶୁଣିବାକୁ ମିଳୁଛି । ହେଲେ ଆମ ପଶୁ ପକ୍ଷୀମାନଙ୍କୁ ସେଠି ଗୀତ ଗାଇବାର ସୁଯୋଗ ଏଯାଏ ମିଳିନାହିଁ । ତୁମପରି ଗୀତ ଗାଇଲା ବାଲା ଯଦି ସେଠାରେ ଗୀତ ନ ଗାଇବ, ତେବେ ଏ ବଣରେ ଆଉ କିଏ ପଶୁ ଅଛି ନାଁ । ଗାଁରେ ଭଲା କିଏ ପଶୁ ଅଛି ଯେ ସେଠି ଗୀତ ଗାଇବ । ଘୋଡ଼ା ସିନା ସବୁ କଥାରେ ବାହାଦୁରି ଦେଖାଏ କିନ୍ତୁ ତମ ପରି ସିଏ କଣ ଗୀତ ଗାଇ ପାରିବ ? ସିଏ ପାଟି ଖୋଲିଲେ ଖାଲି ହସିଲା ପରି ଶୁଭେ । ଏତେ ହସରେ କି ଗୀତ ସିଏ ଗାଇବ ? ଛେଳିଟା ଡ଼ରିକି ମେଁ ମେଁ ହୁଏ । କୁକୁରର ଭୋ ଭୋ ଶବ୍ଦରେ କାନ ବଧିରା ହୋଇଯାଏ । ବିଲେଇଟା ବି

ମିଆଉଁ ମିଆଉଁ ହୁଏ । ଏଗୁଡ଼ା ସବୁ କୋଉ ଗୀତ ଗାଇବେ କହିଲ ଭଲା ? ଗଧ ବଲୁଆ କଥା ଶୁଣି ଗର୍ବରେ ଫୁଲି ଉଠୁଥାଏ । ପୁଣି ବଲୁଆ କହିଲା— ଆଉ ବଣରେ କିଏ ଅଛି ତୁମ ପରି ଗୀତ ଗାଇବ ? ବାଘଟା ତ ଛାଣ୍ଟି ଫଟାଇ ଗର୍ଜନ କରେ । ଶୁଣିଲେ ଭୟ ଲାଗେ । ଭାଲୁଟା ଘୁଡ଼୍ ଘଡ଼୍ ହୁଏ, ସିଏ କି ଗୀତ ଗାଇବ ? ହାତୀଟା ଖାଲି ପେଁ ପା କରେ । ହରିଣ, ଠେକୁଆର ପାଟି ତ ଏ କାନରୁ ସେ କାନକୁ ଶୁଭିବ ନାହିଁ । ସତରେ ଗଧ ମଉସା, ତୁମଠୁ ଭଲ ଗୀତ ଆଉ କେହି ଗାଇ ପାରିବେ ନାହିଁ । ମୁଁ ଆଜି ରେଡ଼ିଓ ଷ୍ଟେସନକୁ ଯାଉଛି, ଷ୍ଟେସନ ଡ଼ାଇରେକ୍ଟରଙ୍କୁ କହି ତୁମେ ରେଡ଼ିଓରେ ଗୀତ ଗାଇବାର ବ୍ୟବସ୍ଥା କରିବି ।

ଗଧ କହିଲା – ହଁ, ବଲୁ, ତୁ ଆଉ ଡେରି ନ କରି ଶୀଘ୍ର ଯାଆ । ଯଦି ସେ ଆମକୁ ରେଡ଼ିଓରେ ଗୀତ ଗାଇବାକୁ ସୁଯୋଗ ନ ଦିଅନ୍ତି, ତେବେ ଆମେ ସବୁ ପଶୁ ମିଶି ରେଡ଼ିଓ ଷ୍ଟେସନ ଘେରାଉ କରିବା । ଆମର ଅସନ୍ତୋଷ ଜଣାଇବା ।

ଆଉ ଗୋଟିଏ କଥା ଗଧ ମଉସା ତୁମେ ତୁମ ଚେହେରା କେବେ ଦେଖିଛ ? ତୁମେ ପ୍ରକୃତରେ ଆମ ପଶୁ ଜଗତରେ ସବୁଠୁ ସୁନ୍ଦର । ତୁମ ଚାଲିଟା ବି ଅତି ସୁନ୍ଦର । ତୁମେ ନାଚିଲେ ଭାରି ଚମତ୍କାର ହେବ । ତୁମେ ଯଦି ଟେଲିଭିଜନରେ ଗୀତ ଗାଇ ନାଚନ୍ତ, ତାହେଲେ ଭାରି ବଢ଼ିଆ ହୁଅନ୍ତା । ତୁମ ସୁନ୍ଦର ଚେହେରା ଆଉ ନାଚ ସାଙ୍ଗକୁ ତୁମ ମଧୁର କଣ୍ଠ ଶୁଣିଲେ, ଆପଣାଛାଏଁ ତୁମ ଭାଗରେ ଗୀତ ନାଚର ପ୍ରଥମ ପୁରସ୍କାରଟା ପଡ଼ନ୍ତା ।

ଗଧ ଖୁସିରେ ଫାଟି ପଡ଼ି କହିଲା—ହଇରେ ବଲୁ ! ତୋଠୁ ବୁଦ୍ଧିମାନ

ଆଉ କିଏ ଅଛୁ ? ତୁ ପରା ବୁଦ୍ଧିରେ ମଣିଷରେ କାନ କାଟି ଦେବୁ । ତୁ ଯାହା କହିଲୁ ମୁଁ ସେଥିରେ ଏକମତ । ତୁ ଏଥର ଯାଇ ରେଡ଼ିଓ ଆଉ ଟେଲିଭିଜନ ସେଣ୍ଟରରେ କଥାବାର୍ତ୍ତା କର, ମୁଁ ରେଡ଼ିଓରେ ଗୀତ ଗାଇବ ଆଉ ଟେଲିଭିଜ-ନରେ ନାଚ, ଗୀତ ଦେବ ।

ପୁଣି ଟିକେ ରହିଯାଇ ଗଧ କହିଲା—ଆଚ୍ଛା ବିଲୁ, ଏସବୁ ହବ ଯେ ବାଜା ଆସିବ କୋଉଠୁ, ଆଉ ବଜାଇବ କିଏ ? ମତେ ଏକଥା କେମିତି କେମିତି ଲାଗୁଛି ।

ବିଲୁଆ କହିଲା—ଗଧ ମଉସା, ସେଥିକି ପରୁଆ କରନା । ଠେକୁଆ ବାଜା ବଜାଇବାରେ ଧୁରନ୍ଧର । ଆଉ ବାଜା କଥା । ସେ କଥା ମୁଁ ବୁଝିବି । ଦୁଇଟା ଖାଲି ଟିଣ ଯୋଗାଡ଼ କଲେ ତା'ଉପରେ ଆମେ ଚମଡ଼ା ପକାଇ ଦେବା । ସିଏ ବଢ଼ିଆ ବାଜା ହେବ । ଅଉ ତୁମେ ଯଦି କହିବ, ମୁଁ ଶିଳପଥରେ ଗୋଟାଏ ତୁରୀ ତିଆରି କରି ବଜାଇବି ।

ଗଧ ବିଲୁଆ କଥା ଶୁଣି ଭାରି ଖୁସି ହୋଇ କହିଲା - ପୁତୁରା ତୁ ଆଉ ଡେରି କରନା, ଯାଆ । ତୋ କାମରେ ଲାଗି ପଡ଼ । ମୁଁ ବି ଯାଉଛି ଘରେ ନାଚ ଗୀତ ଅଭ୍ୟାସ କରିବି ।

ବିଲୁଆ କହିଲା - ନାଇଁ ମଉସା, ତୁମର ଅଭ୍ୟାସ କରିବା ଦରକାର ନାହିଁ । ତୁମେ ଯେଉଁ ନାଚ ଗୀତ ଶିଖିଛ ସେଇ ଯଥେଷ୍ଟ । ମଣିଷ ମାନେ ବି ନାଚରେ ତୁମ ସହିତ ସମାନ ହେବେ ନାହିଁ । ତୁମେ ଟିକେ ଗୀତ ଗାଇକରି ବର୍ତ୍ତମାନ ନାଚ । ମୋ ମନଟା ଭଲ ଲାଗୁନାହିଁ । ତୁମ ଗୀତ ନାଚ ହେଲେ

ମୋ ମନ ଖୁସି ହୋଇଯିବ । ମୁ ଯାଇ ରେଡ଼ିଓ, ଟେଲିଭିଜନରେ ସବୁକଥା ପକକା କରିଦେଇ ଆସିବ ।

ଗଧ ବିଲୁଆ କଥାରେ ଭାରି ଖୁସି ହୋଇଗଲା । ଦୁଇ ଗୋଡ ଟେକି, ମୁହଁ ଓ ଲାଞ୍ଜ ହଲାଇ ନାଚିଲା ଓ କଣ୍ଠ ଫଟାଇ ଗୀତ ଗାଇଲା । ବିଲୁଅ ହସି ହସି ନାକେଦମ୍ ହୋଇଗଲା ।

ବିଲୁଅ ଗଧନାଚର ତାଳେ ତାଳେ ମୁଣ୍ଡ ହଲାଇ ତାଳି ମାରିଲା । ମଝିରେ ମଝିରେ କହିଲା—ବାଃ, ବଃ, ବଢିଆ ନାଚ ବଢିଆ ଗୀତ । ଏମିତି ନାଚ ଗୀତ ମୋ ଆଖି ଫିଟିଲା ଦିନୁ ଦେଖି ନ ଥିଲି କି କାନ ଉଠିଲା ଦିନୁ ଶୁଣି ନ ଥିଲି ।

ବିଲୁଅର ପ୍ରଶଂସା ଶୁଣି ଗଧର ମନ କ୍ରମେ ମୋଟ ହୋଇଗଲା । ସେ ଆହୁରି ଜୋରରେ ଗୀତ ବୋଲିଲା ଓ ଆହୁରି ଜୋରରେ ଅଣ୍ଟା, ମୁଣ୍ଡ, କାନ, ମୁହଁ ହଲାଇ ପାଗଳ ପରି କୁଦିଲା । ଗଧର ଭେଁ ଭେଁ ଗର୍ଜନରେ ବିଲୁଆର କାନ ଫାଟିଗଲା ପରି ଲାଗିଲା । ପଡ଼ିଆ ଦୁଲୁ ଦୁଲୁ ହୋଇ କମ୍ପିଲା ।

ବିଲୁଆ ଆଉ ହସ ଚାପି ନ ପାରି ଖେଁ ଖେଁ ହୋଇ ହୋଇ ହସି ଉଠିଲା । ହସି ହସି ଅଣନିଶ୍ୱାସି ହୋଇ ତଳେ ଗଡ଼ିଗଲା ।

ଗଧ ଆଉ ନିଜ ଆୟତ୍ତରେ ନଥିଲା । ନାଚ ଓ ଗୀତରେ ଏମିତି ମଜ୍ଜି ଯାଇଥିଲା ଯେ ବିଲୁଆର ଥଟ୍ଟା ସେ ବୁଝି ନ ପାରି ସେହିପରି ଗୀତ ଗାଇ ନାଚି ଚାଲିଲା ।

ଗଧର ଚତ୍କାର ଶୁଣି ଓ କୁଦବା ଦେଖି ନଈପୁର ଗାଁର ଲୋକମାନେ ଭାବିଲେ ଗଧଟା ପାଗଳ ହୋଇଯାଇଛି । ବାଡ଼ିରେ ପିଟି ପିଟି ତାକୁ ମାରିଦେଲେ ।



ବିଲୁଆ ବୁଦା ଉହାଡ଼ରେ ରହି ଏସବୁ ଦେଖି ହସି ହସି କହିଲା-- ଗଧଟା କେଡ଼େ ବୋକା ସତେ ! ବୋକା ହେଲେ ଏଇ ଗଧର ଅବସ୍ଥା ଭୋଗିବାକୁ ପଡ଼ିଥାଏ ।



## ଏହି ଲେଖକଙ୍କର
## ଆଉ କେତୋଟି ଶିଶୁ ମନ ପସନ୍ଦ ବହି

### ଶିଶୁ ଗଳ୍ପ

* ପଶୁ ରାଇଜର କଥା (ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ)
* ମାଙ୍କଡ଼ର ଧରମ ପୁଅ
* ପିଲାଙ୍କ ଗପ ଝୁଡ଼ି

### ଶିଶୁ କବିତା

* ଶିଶୁ କଥା କବିତା
* ଅକଳ ମକଳ ଟକଳ ଟିଆଁ